# ସପ୍ତର୍ଷି

( ଜୀବନ : ପ୍ରତିଭା )

ସଂକଳନ :

## ଉତ୍କଳ ପାଠକ ସଂସଦ

ପରିବେଷକ :



ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୭୫୩୦୦୨

# ସପ୍ତର୍ଷି

(ଜୀବନ : ପ୍ରତିଭା)

ସଙ୍କଳନ :
**ଉତ୍କଳ ପାଠକ ସଂସଦ**
ସୁଜାତା ଭବନ, କଳିଙ୍ଗଲେନ୍
ମହତାବ ରୋଡ୍, କଟକ-୧୨

ସମ୍ପାଦନା :
ଶ୍ରୀ ପଠାଣି ପଟ୍ଟନାୟକ
ଡଃ ବ୍ରଜମୋହନ ମହାନ୍ତି
ଶ୍ରୀ ପରମେଶ୍ୱର ତ୍ରିପାଠୀ
ଶ୍ରୀ ପ୍ରସନ୍ନ କୁମାର ଦାଶ
ଶ୍ରୀ ବୀର କିଶୋର ସାହୁ
ଶ୍ରୀ ସୁବ୍ରତ ପ୍ରିୟବ୍ରତ ମହାନ୍ତି

ପ୍ରକାଶ କାଳ :
ମାର୍ଚ୍ଚ ୨୦ ତାରିଖ, ୧୯୯୪

ପ୍ରଚ୍ଛଦ ଶିଳ୍ପୀ :
**ଶ୍ରୀ ସୁନାମଣି ସାମଲ**

ପ୍ରାପ୍ତିସ୍ଥାନ :
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩୦୦୨

ମୁଦ୍ରଣ :
**ରେଖା ପ୍ରେସ**
ବାମ୍ଫିସାହି, କଟକ-୭୫୩୦୦୯

ମୂଲ୍ୟ : **କୋଡ଼ିଏ ଟଙ୍କା ମାତ୍ର**

**SAPTARSHI**

(A Biographical Book)

Compiled by
UTKAL PATHAK SAMSAD
Sujata Bhawan, Kalinga Lane
Mahatab Road, Cuttack-12

Available at :
**ORISSA BOOK STORE**
Binodbehari, Cuttack-753002

Printed at :
**Rekha Press**
Bamphi Sahi, Cuttack-9

Price : Rs. 20/-

## ଉତ୍କଳ ପାଠକ ସଂସଦର ପରିବାର :

ସଭାପତି : ଡକ୍ଟର ସଦାଶିବ ମିଶ୍ର
ସମ୍ପାଦକ : ଡକ୍ଟର ବ୍ରଜମୋହନ ମହାନ୍ତି
ସହ-ସମ୍ପାଦକ : ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

## ପରାମର୍ଶ ଦାତା :

ଜଷ୍ଟିସ୍ ହରିହର ମହାପାତ୍ର
ଶ୍ରୀ ପଠାଣି ପଟ୍ଟନାୟକ
ଶ୍ରୀ ନନ୍ଦପ୍ରିୟା ବହାଲି ମହାନ୍ତି
ଶ୍ରୀମତୀ ବୀଣା ଦେବୀ
ଶ୍ରୀ ଭିକାରୀ ଚରଣ ମିଶ୍ର
ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି

## ପରିବାରର ଅନ୍ୟମାନେ :

ସର୍ବଶ୍ରୀ ପରମେଶ୍ୱର ତ୍ରିପାଠୀ
ରାହାସ ରାୟ
ଶୁଭନାରାୟଣ ସ୍ୱାଇଁ
ପ୍ରସନ୍ନ କୁମାର ଦାଶ
ମହେଶ୍ୱର ମୂଳିଆ
ବୀରକିଶୋର ସାହୁ
ବରଦା ପ୍ରସନ୍ନ ପଟ୍ଟନାୟକ
ଗୋକୁଳାନନ୍ଦ ଦାସ
ଗୋବିନ୍ଦ ଚରଣ ପାତ୍ର
ରାଧାଶ୍ୟାମ ମହାନ୍ତି
ଚନ୍ଦ୍ରଶେଖର ପ୍ରଧାନ
ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ
ନବୀନକିଶୋର ପଟ୍ଟନାୟକ
ବୀଣାପାଣି ମହାନ୍ତି
ବସନ୍ତ କୁମାର ସାହୁ
ବସନ୍ତ କୁମାର ମହାନ୍ତି
ଡଃ ତୀର୍ଥାନନ୍ଦ ମିଶ୍ର
ଡଃ. ବୀଣାପାଣି ସିଂହ
ହରିହର ବାହିନୀପତି
ହରଶଙ୍କର ବଡ଼ପଣ୍ଡା
ପ୍ରମିଳା ନାୟକ
ନିର୍ମଳ ଚନ୍ଦ୍ର ପଣ୍ଡା
ଡଃ. ବିଜୟାନନ୍ଦ ସିଂହ
ପଣ୍ଡିତ ରାମକୃଷ୍ଣ ପତି (ଗୁରୁଜୀ)
ପୃଥ୍ୱୀରାଜ ପଟ୍ଟନାୟକ
ଡଃ. ହରିହର କାନୁନ୍‌ଗୋ
ପଙ୍କଜ ସାହୁ
ନରହରି ଉପାଧ୍ୟାୟ
ପ୍ରଫୁଲ୍ଲ ପଟ୍ଟନାୟକ
ଡଃ. କିଶୋର ଚନ୍ଦ୍ର ସାହୁ
ନନ୍ଦକିଶୋର ପରିଡ଼ା
ଡଃ. ବୈଷ୍ଣବ ଚରଣ ସାମଲ
ଅର୍ଜ୍ଜୁନ ଦାଶ
କାକଳି ପାଲ୍ (ମହାନ୍ତି)

ସତ୍ୟରଞ୍ଜନ ମହାନ୍ତି
ଶାନ୍ତମୟୀ ପତ୍ତ
ସୁଜାତା ମହାନ୍ତି
ଦୁଃଖୀଶ୍ୟାମ ମହାପାତ୍ର
ଡଃ ରତ୍ନାକର ଚଇନି
ସୁବ୍ରତ ପ୍ରିୟବ୍ରତ ମହାନ୍ତି
ଜଗଦୀଶ ପଟ୍ଟନାୟକ
ବିମଳ କଙ୍କର ମହାନ୍ତି
ନାରାୟଣ ମହାପାତ୍ର
ଶୁକଦେବ ସାହୁ
ଅରୁଣ କୁମାର ପଣ୍ଡା
ଘାନକୃଷ୍ଣ ମହାନ୍ତି
କୃଷ୍ଣଚନ୍ଦ୍ର ମହାପାତ୍ର
ସୂର୍ଯ୍ୟମଣି ଖୁଣ୍ଟିଆ
ପ୍ରହ୍ଲାଦ ଚରଣ ମହାନ୍ତି
ଡଃ ପ୍ରଭାତ କୁମାର ମିଶ୍ର
ଅପର୍ଣ୍ଣା ମିଶ୍ର
ଶାନ୍ତରଞ୍ଜନ କର
ତପନ ମିତ୍ର
ଡାକ୍ତର ଶୈଳେଶ୍ୱର ନନ୍ଦ
ଦେବଦତ୍ତ ସାମନ୍ତସିଂହାର
ସୂର୍ଯ୍ୟମଣି ଖୁଣ୍ଟିଆ
ଭଗବାନ ଜୟସିଂହ
ସ୍ୱର୍ଣ୍ଣଲତା ସିଂ ସାମନ୍ତ

କାଞ୍ଚନାରାୟଣ ମହାନ୍ତି
ସଞ୍ଜୀବ୍ କୁମାର ପଟ୍ଟନାୟକ
ଦିଗମ୍ବର ଦାସ
ଡଃ ଶ୍ରୀଚରଣ ଦାସ
ଗଙ୍ଗାଧର ମହାରଣା
ଗୁରୁ ପ୍ରମାଦ ମହାନ୍ତି
ଲକ୍ଷ୍ମୀ ଚରଣ ନଉତରାୟ
ବତ୍ସାନନ୍ଦ କାନୁନ୍‌ଗୋ
ଦୁର୍ଗା ଚରଣ ଷଡ଼ଙ୍ଗୀ
ଚକ୍ରଧର ଦାସ
ଉଦୟ ନାରାୟଣ ପାଢ଼ୀ
ଅମିତା ବେହେରା
ବରଦା କାନ୍ତ ମହାନ୍ତି
ଘନଶ୍ୟାମ ପାଣି
ପ୍ରମୋଦ କିଶୋର ପଣ୍ଡା
କନକମଞ୍ଜରୀ ମହାନ୍ତି
ପ୍ରତିମା ସାହୁ
ଶଙ୍କର୍ଷଣ ମଙ୍ଗରାଜ
ଜୟକୃଷ୍ଣ ମହାନ୍ତି
ସନ୍ଧ୍ୟାରାଣୀ ସିଂହ
ସରୋଜନୀ ମିଶ୍ର
କେଶବ ଚନ୍ଦ୍ର ଦାଶ
ବିନୋଦିନୀ ପଟ୍ଟନାୟକ



ଡକ୍ଟର ଗଙ୍ଗାଧର ବଳ



ଶ୍ରୀ ଲକ୍ଷ୍ମୀଧର ନାୟକ



ଶ୍ରୀ ପ୍ରୟାଗଦତ୍ତ ଜୋଷୀ



ଶ୍ରୀ ନବକିଶୋର ପଟ୍ଟନାୟକ



ଶ୍ରୀ ଶରତ ପୂଜାରୀ



ଶ୍ରୀ ରଘୁନାଥ ପାଠୀଶାସ୍ତ୍ରୀ



ଶ୍ରୀ ଅଭିରାମ ମହାପାତ୍ର

# ଆମର ଅଭିମୁଖ୍ୟ

୧୯୭୦ ମସିହାରେ ଜାତିସଂଘ ପକ୍ଷରୁ ଆୟୋଜିତ ଅନ୍ତର୍ଜାତୀୟ ପୁସ୍ତକ ବର୍ଷ ଅବସରରେ ଜନ୍ମଲାଭ କରିଥିଲା 'ଉତ୍କଳ ପାଠକ ସଂସଦ' । ଏହି ବର୍ଷଠାରୁ ପୁସ୍ତକ ପ୍ରସାର ଉଦ୍ଦେଶ୍ୟରେ ଆଲୋଚନାଚକ୍ର, ପୁସ୍ତକ ପ୍ରଦର୍ଶନୀ, ବୈଷୟିକ ପ୍ରଦର୍ଶନୀ, ବୈଷୟିକ ଆଲୋଚନା, କବି ସମ୍ମିଳନ, ହାସ୍ୟରସାତ୍ମକ କାର୍ଯ୍ୟକ୍ରମ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ଲୋକବାଦ୍ୟ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ପ୍ରସାର, ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦର୍ଶନ, ସେମାନଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ ପ୍ରକାଶନ ଏବଂ ଭାଷା, ସଂସ୍କୃତି ଓ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ବିଭିନ୍ନ ବିଷୟବସ୍ତୁ ଉପରେ ବିଶେଷ ସଙ୍କଳନ ପ୍ରକାଶ କରାଯାଉଅଛି । ଏତଦ୍‌ବ୍ୟତୀତ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବର ଆୟୋଜନ କରି ନୂତନ ସାହିତ୍ୟିକ ସୃଷ୍ଟି ଓ ବୈଷୟିକ ଆଲୋଚନା ଦ୍ୱାରା ଲୋକମାନଙ୍କର ବୌଦ୍ଧିକ ବିକାଶ ଦିଗରେ ସାହାଯ୍ୟ କରିବା ପାଇଁ ମଧ୍ୟ ସଂସଦ ପଦକ୍ଷେପ ନେବାକୁ ଯତ୍ନ କରୁଛି ।

ଉତ୍କଳ ପାଠକ ସଂସଦ ବିଶ୍ୱାସ କରେ ଯେ— ଏ ଜାତିର ଶତ ଶତ ପ୍ରତିଭାଧର ବ୍ୟକ୍ତି ସ୍ୱ ସ୍ୱ କ୍ଷେତ୍ରରେ ସୁପ୍ରତିଷ୍ଠିତ । କଳା, ବିଜ୍ଞାନ, ସାହିତ୍ୟ, ସଂସ୍କୃତି, ଶିକ୍ଷା, ଭାସ୍କର୍ଯ୍ୟ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ସ୍ୱାକ୍ଷର ସୁସ୍ପଷ୍ଟ । ସେମାନଙ୍କ ମଧ୍ୟରୁ କେତେକ ଦ୍ୱିଏତ

ସମାଜରେ ସ୍ୱୀକୃତ, ସମ୍ମାନିତ, ମାନ ବିଭିନ୍ନ କାରଣରୁ ଆଦୃତ ଅନେକେ ଉପଯୁକ୍ତ ସମ୍ମାନ ଲାଭରୁ ବଞ୍ଚିତ ।

କିନ୍ତୁ ମନେ ରଖିବାକୁ ହେବ ଯେ—ପ୍ରତିଭା ପୂଜା ଗୋଟିଏ ଜାତିର ସାଂସ୍କୃତିକ ଜୀବନକୁ ବଳିଷ୍ଠ ତଥା ଋଦ୍ଧିମନ୍ତ କରିଥାଏ । ଓଡ଼ିଶାରେ ଅନେକ କୃତୀ ସନ୍ତାନ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ଆନ୍ତର୍ଜାତିକ ସମ୍ମାନର ଅଧିକାରୀ ହୋଇ ପାରିଥିଲେ ସୁଦ୍ଧା ସେମାନଙ୍କର ଜୀବନୀ ଏବଂ କୃତି ଯଥାଯଥ ଭାବରେ ସଂଗୃହୀତ ହୋଇପାରି ନାହିଁ ।

ଉତ୍କଳ ପାଠକ ସଂସଦ ପୂଜ୍ୟ ପୂଜାର ପରମ୍ପରା ରକ୍ଷାକରି ଜୀବିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାରେ କାଞ୍ଚିତ ପ୍ରୟାସ କରିଛି । ଏହି କାର୍ଯ୍ୟକ୍ରମ ଅନୁସାରେ ୧୯୬୦ ମସିହାଠାରୁ ପ୍ରତ୍ୟେକ ବର୍ଷ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଇଛି । ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅଛନ୍ତି ସର୍ବଶ୍ରୀ କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରଣୀ ଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀମତୀ ସରଳା ଦେବୀ, ଶ୍ରୀ ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡକ୍ଟର ମିନତି ମିଶ୍ର, ସାମୁଏଲ ସାହୁ (ବାବି) ଓ ଅନ୍ୟ କେତେକଜଣ ବିଭିନ୍ନ କ୍ଷେତ୍ରରେ ସ୍ମରଣୀୟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଅଛି । ପ୍ରଥମ ୫ ବର୍ଷରେ କେବଳ ମାନପତ୍ର ଦେଇ ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରିବାରେ ଏ ସଂସଦ ସନ୍ତୁଷ୍ଟ ହୋଇ ପାରିଲା ନାହିଁ । ସେଥି-ପାଇଁ ପରେ ପ୍ରତ୍ୟେକ ବର୍ଷ ପର୍ଯ୍ୟାୟକ୍ରମେ ଜୀବନ ଚରିତ ଓ କାର୍ଯ୍ୟ କଳାପକୁ ପୁସ୍ତକ ଆକାରରେ ପ୍ରକାଶ କରି ଆସୁଅଛି ।

ଏହି ସଂସଦ ପକ୍ଷରୁ ଏ ପର୍ଯ୍ୟନ୍ତ ଅନେକଗୁଡ଼ିଏ ଜୀବନୀ ସଙ୍କଳନ ପ୍ରକାଶ ପାଇଲାଣି । ଯଥା—

(୧) ପ୍ରତିଭା ପରିଚୟ ୧୯୭୬, (୨) ସପ୍ତରଶ୍ମି ୧୯୭୭, (୩) ସପ୍ତଶିଖା ୧୯୭୮, (୪) ସପ୍ତଦୀପ ୧୯୭୯, (୫) ସପ୍ତଶ୍ରୀ ୧୯୮୦, (୬) ସପ୍ତଜ୍ୟୋତି ୧୯୮୧, (୭) ସପ୍ତପୁଷ୍ପ ୧୯୮୨, (୮) ସପ୍ତରତ୍ନ ୧୯୮୩, (୯) ସପ୍ତସୁମନ ୧୯୮୪, (୧୦) ସପ୍ତ ସ୍ତବକ ୧୯୮୫, (୧୧) ସପ୍ତ

ତରଙ୍ଗ ୧୯୮୬ (୧୨) ସପ୍ତପ୍ରଭା ୧୯୮୭, (୧୩) ସପ୍ତମାଳା ୧୯୮୮, (୧୪) ସପ୍ତଶାଖା ୧୯୮୯, (୧୫) ସପ୍ତତାରକା ୧୯୯୦, (୧୬) ସପ୍ତ ସୌରଭ ୧୯୯୧, (୧୭) ସପ୍ତସାଧକ ୧୯୯୨, (୧୮) ସପ୍ତ ଗୌରବ ୧୯୯୩ ।

୧୯୭୬ ମସିହାରେ 'ପ୍ରତିଭା ପରିଚୟ' ପୁସ୍ତକରେ ସାହିତ୍ୟ ସାଧକ କାଳନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ସାହିତ୍ୟିକ ଓ ସାମ୍ବାଦିକ ଉଦୟନାଥ ଷଡ଼ଙ୍ଗୀ, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ, ମାଷ୍ଟର ରାମଚନ୍ଦ୍ର ମାଣିଆ, ସ୍ୱରସାଧକ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ପୁସ୍ତକ ପ୍ରକାଶକ ଅନନ୍ତ ମିଶ୍ରଙ୍କ ଜୀବନୀ ଓ କୃତି ଆଲୋଚିତ ।

୧୯୭୭ରେ ସଙ୍କଳିତ 'ସପ୍ତରଶ୍ମି' ପୁସ୍ତକରେ ପ୍ରଖ୍ୟାତ ସାମ୍ବାଦିକ ଡକ୍ଟର ରାଧାନାଥ ରଥ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ଚିତ୍ର ଶିଳ୍ପୀ ବିପିନ ବିହାରୀ ଚୌଧୁରୀ, ଅନୁବାଦକ ଲଳିତ ନରେନ୍ଦ୍ର କୁମାର ରାୟ, ସଙ୍ଗୀତ ସାଧକ ବାଳକୃଷ୍ଣ ଦାଶ, ନାଟ୍ୟଭୂଷଣ ସର୍ବ୍ବଂସହା ପୂଣ ରାଜଗୁରୁ ଏବଂ ପୁସ୍ତକ ପ୍ରକାଶକ ଗୋକୁଳଚନ୍ଦ୍ର କରଙ୍କ ଜୀବନୀ ଓ କୃତି ପ୍ରକାଶିତ ।

୧୯୭୮ରେ ପ୍ରକାଶିତ 'ସପ୍ତଶିଖା' ପୁସ୍ତକରେ ଅଭିନେତା ଯଶୋଦା ଦାସ, ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ବିପ୍ଳବୀ ରାଜକୃଷ୍ଣ ବୋଷ, ଚିତ୍ରଶିଳ୍ପୀ ମୁରଲୀଧର ଟାଲି, ସାମ୍ବାଦିକ ଶ୍ରୀହର୍ଷ ମିଶ୍ର, କଥାସାହିତ୍ୟ ସାଧକ ସୁରେନ୍ଦ୍ର ମହାନ୍ତି, ସଙ୍ଗୀତଜ୍ଞ ଶ୍ୟାମସୁନ୍ଦର ଧୀର ଏବଂ ଗ୍ରନ୍ଥବନ୍ତ ପ୍ରକାଶକ ଗୋବିନ୍ଦ ଚରଣ ପାତ୍ରଙ୍କ ସାଧନାପୂର୍ଣ୍ଣ ଜୀବନୀ ସନ୍ନିବିଷ୍ଟ ।

୧୯୭୯ରେ 'ସପ୍ତ ପ୍ରଦୀପ' ପୁସ୍ତକରେ ଛଉନୃତ୍ୟ ଗୁରୁ ଚନ୍ଦ୍ରଶେଖର ଭଞ୍ଜ, ଚିତ୍ରଶିଳ୍ପୀ ହରିଶରଣ ମହାପାତ୍ର, ସଙ୍ଗୀତ ସାଧକ ଜଗବନ୍ଧୁ ସାହୁ, ବିଚ୍ଛିନ୍ନାଞ୍ଚଳ କବି ଜଗନ୍ନାଥ ଦେବଶର୍ମା, ଜନସେବୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶିକ୍ଷାବିତ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାରସ୍ୱତ ସାଧକ ଶ୍ରଦ୍ଧାକର ସୂପକାରଙ୍କ କୃତି ବର୍ଣ୍ଣିତ ।

୧୯୮୦ରେ "ସପ୍ତଶ୍ରୀ" ପୁସ୍ତକରେ ସାହିତ୍ୟସେବୀ ଡକ୍ଟର ହରେକୃଷ୍ଣ ମହତାବ, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ,

ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ମିଶ୍ର, ସାହିତ୍ୟିକ ଶ୍ରୀ ରାମପ୍ରସାଦ ସିଂହ, ବେଦାନ୍ତାଳଙ୍କାର ପଣ୍ଡିତ ଗଣେଶ୍ୱର ରଥ, ଗାୟକରତ୍ନ ବୈଦ୍ୟନାଥ ଶର୍ମା, ପାଲ ଗାୟକ ଶ୍ରୀ ପରମାନନ୍ଦ ଶରଣଙ୍କ ଜୀବନୀ ଉପରେ ଆଲୋକପାତ କରାଯାଇଛି ।

୧୯୮୧ 'ସପ୍ତଜ୍ୟୋତି' ସଙ୍କଳନରେ ନାଟ୍ୟକାର ଗୋପାଳ ଛୋଟରାୟ, ସମାଜସେବୀ ନନ୍ଦକିଶୋର ଦାସ, ଇତିହାସବେତ୍ତା ଡକ୍ଟର ନବୀନ କୁମାର ସାହୁ, ଗବେଷକ ସୁଧାକର ପଟ୍ଟନାୟକ, ପ୍ରତ୍ନତତ୍ତ୍ୱବିତ୍ କେଦାର ନାଥ ମହାପାତ୍ର, ଶିଳ୍ପୀଗୁରୁ ଜଗନ୍ନାଥ ମହାପାତ୍ର ଓ ନୃତ୍ୟଗୁରୁ ଭଗବାନ ସାହୁଙ୍କ କୃତି ସ୍ଥାନ ପାଇଛି ।

୧୯୮୨ର 'ସପ୍ତପୁଷ୍ପ' ସଙ୍କଳନ ରସିକରାଜ କବି ଫତୁରାନନ୍ଦ, ପାଲଗାୟକ ନିରଞ୍ଜନ କର, ମଞ୍ଚଗୁରୁ ଦୁର୍ଲ୍ଲଭ ଚନ୍ଦ୍ର ସିଂ, ଶିଳ୍ପୀ ଶିରୋମଣି ଶ୍ରୀଧର ମହାପାତ୍ର, ବାଣୀ ବରପୁତ୍ର ରାମକୃଷ୍ଣ ନନ୍ଦ, ଚଳନ୍ତି ଚରକ କବିରାଜ ଅନନ୍ତ ତ୍ରିପାଠୀଶର୍ମା ଓ ସମାଜ ସେବକ ପଦ୍ମଶ୍ରୀ ମୋହନ ନାୟକଙ୍କ ଜୀବନୀ ଓ ସାଧନା ଉପରେ ଆଧାରିତ ।

୧୯୮୩ 'ସପ୍ତରାଗ' ସଙ୍କଳନରେ ଭାଷାବିଜ୍ଞାନୀ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଜନସେବୀ ଲମ୍ବୋଦର ପାଣିଗ୍ରାହୀ, କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଉତ୍କଳବନ୍ଧୁ ପି. ଭି. କୃଷ୍ଣମୂର୍ତ୍ତି, ସୃଜନଶୀଳ ନାଟ୍ୟକାର ମନୋରଞ୍ଜନ ଦାସ, ସ୍ଥାପତ୍ୟ ଶିଳ୍ପୀ ଭୁବନେଶ୍ୱର ମହାପାତ୍ର ଓ ଛଉନୃତ୍ୟ ଗୁରୁ ଅନନ୍ତ ଚରଣ ସାୟୁଙ୍କ ଜୀବନୀ ଓ କୃତି ଉପରେ ଆଲୋକପାତ କରାଯାଇଛି ।

୧୯୮୪ର 'ସପ୍ତସୁମନ' ସଙ୍କଳନରେ ସାହିତ୍ୟ ସାଧକ ଡକ୍ଟର ଭୁବନେଶ୍ୱର ବେହେରା, ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ, ଜନସେବକ ଡାକ୍ତର ଶରତଚନ୍ଦ୍ର ମିଶ୍ର, ମଞ୍ଚଶ୍ରୀ ସତ୍ୟନାରାୟଣ ପଣ୍ଡା, ସଙ୍ଗୀତଗୁରୁ ଶ୍ରୀ କ୍ଷିତୀଶ ଚନ୍ଦ୍ର ମୈତ୍ର, ଗବେଷକ ଡକ୍ଟର ନଟବର ସାମନ୍ତରାୟ, ଛଉନୃତ୍ୟ ଗୁରୁ ପଦ୍ମଶ୍ରୀ କେଦାରନାଥ ସାହୁଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୮୫ ମସିହାରେ 'ସପ୍ତସ୍ତବକ' ଜୀବନୀ ପୁସ୍ତକରେ ସଙ୍ଗଠକ ବାବୁଲାଲ ଦୋଶୀ, କଳାକାର ବାଞ୍ଛାନିଧି ଶତପଥୀ, ସାହିତ୍ୟିକ ଅନନ୍ତ

ପ୍ରସାଦ ପଣ୍ଡା, ଗବେଷକ ବିନୋଦ କାନୁନ୍‌ଗୋ, ସଙ୍ଗୀତ ସାଧକ ଭୁବନେଶ୍ବର ମିଶ୍ର, ଚିତ୍ରଶିଳ୍ପୀ ଲକ୍ଷ୍ମୀନାରାୟଣ ଆଗୃରୀ, ହାସ୍ୟସ୍ରଷ୍ଟା କବି ବସନ୍ତ କୁମାର ଶତପଥୀଙ୍କ ଜୀବନୀ ପ୍ରଦତ୍ତ ।

ସେହିପରି ୧୯୮୬ ମସିହାରେ 'ସପ୍ତତରଙ୍ଗ' ଜୀବନୀ ପୁସ୍ତକ ପ୍ରକାଶ ଲଭ କରିଥିଲ । ଏହି ପୁସ୍ତକରେ ସ୍ଥାନ ଲଭ କରିଥିଲା ଐତିହାସିକ ଡକ୍ଟର ମନ୍ମଥନାଥ ଦାସ, ନାଟ୍ୟକାର ରଘୁନାଥ ପଣ୍ଡା, ସଙ୍ଗୀତ ଶିଳ୍ପୀ ମାର୍କଣ୍ଡେୟ ମହାପାତ୍ର, ସମାଜସେବୀ ଶ୍ୟାମସୁନ୍ଦର ମିଶ୍ର, ନୃତ୍ୟଗୁରୁ ପଙ୍କଜ ଚରଣ ଦାସ, କବି ଅନନ୍ତ ପଟ୍ଟନାୟକ ଓ ସମ୍ପାଦକ ଦାଶରଥି ପଟ୍ଟନାୟକଙ୍କ ଜୀବନୀ ।

୧୯୮୭ ମସିହାରେ ପ୍ରକାଶ ଲଭ କରିଥିଲ 'ସପ୍ତପ୍ରଭା' । ଏହି ସଙ୍କଳନରେ ସାହିତ୍ୟିକ ଅନୁପ ସିଂହଦେଓ, ଗବେଷକ ଡକ୍ଟର ବଂଶୀଧର ମହାନ୍ତି, ବୈଜ୍ଞାନିକ ଡଃ ଗୋକୁଳାନନ୍ଦ ମହାପାତ୍ର, ନୃତ୍ୟଶିଳ୍ପୀ ଡକ୍ଟର ପ୍ରିୟମ୍ବଦା ମହାନ୍ତି (ହେଜମାଡ଼ି), ସଙ୍ଗୀତ ଶିଳ୍ପୀ କାଶୀନାଥ ପୂଜାପଣ୍ଡା, ଚିତ୍ରଶିଳ୍ପୀ ଅସିତ୍ ମୁଖାର୍ଜୀ ଏବଂ ପ୍ରକାଶକ ଶୁକଦେବ ସାହୁଙ୍କ ଜୀବନୀ ସ୍ଥାନ ପାଇଥିଲ ।

ଏତଦ୍ ବ୍ୟତୀତ ୧୯୮୮ ମସିହାରେ 'ସପ୍ତଧାର' ଜୀବନୀ ପଣ୍ଡିତ ଚିନ୍ତାମଣି ମିଶ୍ର, କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, ଅଭିନେତ୍ରୀ ମଣିମାଳା ଦେବୀ, ଗବେଷକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ନୃତ୍ୟଶିଳ୍ପୀ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀ, ସମାଜସେବୀ ଶ୍ରୀମତୀ ରମାଦେବୀ ଓ ସୁଲଳିତ ଶାସ୍ତ୍ରୀୟ ସଙ୍ଗୀତ ଗାୟିକା ଶ୍ରୀମତୀ ବୀଣାପାଣି ମିଶ୍ରଙ୍କ ଜୀବନୀ ।

୧୯୮୯ ମସିହାରେ 'ସପ୍ତଶାଖା' ପୁସ୍ତକ ପ୍ରକାଶିତ ହୋଇଥିଲ । ଏ ପୁସ୍ତକରେ ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀ ନୃସିଂହ ନାଥ ଖୁଣ୍ଟିଆ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ କୁଞ୍ଜବିହାରୀ ମେହେର, ଶ୍ରୀ ମନମୋହନ ଚୌଧୁରୀ, ଶ୍ରୀ ବିପ୍ରଚରଣ ମହାନ୍ତି ଓ ଶ୍ରୀ ପ୍ରିୟନାଥ ମିଶ୍ର (ବୀର)ଙ୍କ ଜୀବନୀ ସ୍ଥାନ ପାଇଛି ।

୧୯୯୦ ମସିହାରେ 'ସପ୍ତତାରକା' ପୁସ୍ତକ ପ୍ରକାଶିତ ହୋଇଥିଲ । ଏ ପୁସ୍ତକରେ ଗବେଷକ, କବି ଓ ଶିଳ୍ପୀ ଶ୍ରୀ ବିନୋଦ ରାଉତରାୟ,

ଅଭିନେତା କଳାକାର ଦୁଃଖୀରାମ ସ୍ୱାଇଁ, ନୃତ୍ୟସାଧକ ନୃତ୍ୟଗୁରୁ ଶ୍ରୀ ରଘୁନାଥ ଦତ୍ତ, ସଙ୍ଗୀତ ସାଧକ ସଙ୍ଗୀତାଚାର୍ଯ୍ୟ ଶ୍ରୀ ସୁକୁମାର ସାହୁ, ବହୁଭାଷାବିତ୍ ଶ୍ରୀ ମନମୋହନ ମିଶ୍ର, ସାହିତ୍ୟିକ ରାଜଗୁରୁ କବିଭୂଷଣ ରାଜକିଶୋର ପଟ୍ଟନାୟକ ଓ ପ୍ରକାଶକ ପୀତାମ୍ବର ମିଶ୍ରଙ୍କ ଜୀବନୀ ଓ କୃତି ସ୍ଥାନ ପାଇଛି ।

୧୯୯୧ ମସିହାରେ ସେହିପରି ସାତ ଜଣ ପ୍ରତିଭାବାନ୍ ବ୍ୟକ୍ତିଙ୍କ ଜୀବନୀ ଉପରେ ଆଧାରିତ ପୁସ୍ତକ 'ସପ୍ତ ସୌରଭ' ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସ୍ଥାନ ପାଇଥିଲା ସେମାନେ ହେଲେ—ସାମ୍ବାଦିକ ଯୁଗଳ କିଶୋର ପାଣିଗ୍ରାହୀ, ଗାନ୍ଧିକ ରାଜକିଶୋର ରାୟ, ଅଭିନେତା ବ୍ୟୋମକେଶ ତ୍ରିପାଠୀ, ଗବେଷକ କେଶବ ଚନ୍ଦ୍ର ମେହେର, କଳାକାର କୋହ୍ଲିଚରଣ ସାହୁ, ସମାଜ ସେବୀକା ପାର୍ବତୀ ଗିରି ଏବଂ ପ୍ରକାଶକ ରାଧାଶ୍ୟାମ ମହାନ୍ତି ।

୧୯୯୨ ମସିହାରେ ୭ ଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଇ ସେମାନଙ୍କ ଜୀବନୀ ଉପରେ ଆଧାରିତ 'ସପ୍ତ ସାଧକ' ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ—କବି ଡଃ ବିନୋଦ ଚନ୍ଦ୍ର ନାୟକ, ନାଟ୍ୟକାର ଶ୍ରୀଯୁକ୍ତ ପ୍ରାଣବନ୍ଧୁ କର, ସଂସ୍କୃତ ଭାଷାବିତ୍ ଜନସେବୀ କବିରାଜ ପଣ୍ଡିତ କୃଷ୍ଣଚନ୍ଦ୍ର ତ୍ରିପାଠୀଶର୍ମା, ଅଭିନେତା ଶ୍ରୀଯୁକ୍ତ ଧୀନବନ୍ଧୁ ଦାସ (ଟିମା), ସଙ୍ଗୀତପ୍ରବୀଣ ଶ୍ରୀଯୁକ୍ତ ନିତାଇ ଚରଣ ସିହ୍ନା, ସାମ୍ବାଦିକ ଶ୍ରୀଯୁକ୍ତ ରାମଚନ୍ଦ୍ର ଦାଶ ଏବଂ ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନ ।

ସେହିପରି ୧୯୯୩ ମସିହାରେ ସାତ ଜଣ ପ୍ରତିଭାଧର ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଇ ସେମାନଙ୍କ ଜୀବନୀ ଉପରେ ଆଧାରିତ 'ସପ୍ତଗୌରବ' ପୁସ୍ତକ ପ୍ରକାଶ ଲାଭ କରିଥିଲା । ଏହି ପୁସ୍ତକରେ ଯେଉଁ ମହାନ୍ ବ୍ୟକ୍ତି-ମାନଙ୍କର ଜୀବନୀ ସଙ୍କଳିତ ହୋଇଛି ସେମାନେ ହେଲେ— ସବୁଜ ଯୁଗର ସାହିତ୍ୟିକ ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ, ଗବେଷକ ଡଃ ବେଣୀମାଧବ ପାଢ଼ୀ, ଯନ୍ତ୍ରସଙ୍ଗୀତ ଶିଳ୍ପୀ ଶ୍ରୀ ଭକ୍ତବତ୍ସଳ ପାତ୍ର, ଚିତ୍ରଶିଳ୍ପୀ ଶ୍ରୀ ଅଜିତ୍ କେଶରୀ

ରାୟ, ପଲ୍ଲୀକବି ଶ୍ରୀ ଗୋଲକଚନ୍ଦ୍ର ପ୍ରଧାନ, ଅଭିନେତା ଶ୍ରୀ ନିରଞ୍ଜନ ଶତପଥୀ ଓ ନୃତ୍ୟଗୁରୁ ଶ୍ରୀ ମାୟାଧର ରାଉତ ।

ଏ ବର୍ଷ ଯେଉଁ ପ୍ରତିଭାଧର ବ୍ୟକ୍ତିମାନେ ସମ୍ମାନଲାଭ କରୁଛନ୍ତି, ସେମାନେ ହେଲେ—ସାହିତ୍ୟିକ ଶ୍ରୀ ଲକ୍ଷ୍ମୀଧର ନାୟକ, ଗବେଷକ ଡଃ ଗଙ୍ଗାଧର ବଳ, ଉପାନ୍ତ ଅଞ୍ଚଳର ସାହିତ୍ୟ ସାଧକ ଶ୍ରୀ ପ୍ରୟାଗ ଦତ୍ତ ଜୋଷୀ, ଚିତ୍ରଶିଳ୍ପୀ ଏବଂ ଜନସେବୀ ତଥା ସଂଗ୍ରାମୀ ଶ୍ରୀ ନବକିଶୋର ପଟ୍ଟନାୟକ, ସାମ୍ବାଦିକ ଶ୍ରୀ ରଘୁନାଥ ପାଠୀଶାସ୍ତ୍ରୀ, ଅଭିନେତା ଶ୍ରୀ ଶରତଚନ୍ଦ୍ର ପୂଜାରୀ ଏବଂ ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର । ଏହି ପ୍ରତିଭାଧର ବ୍ୟକ୍ତିମାନଙ୍କର ଜୀବନ ଚରିତ ଅନ୍ୟମାନଙ୍କୁ ଯେ ଉଦ୍‌ବୁଦ୍ଧ କରିବ, ଏହା ନିଃସନ୍ଦେହ ।

ଆମେ ଆଶାକରୁ ଆମର ଏହି ଉଦ୍ୟମ ଓଡ଼ିଶାର ପାଠକ-ପାଠିକାଙ୍କ ନିକଟରେ ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ପରିଚିତ କରାଇବାରେ ସହାୟକ ହେବ । ସେମାନଙ୍କୁ ଯେଉଁ ମାନପତ୍ର ପ୍ରଦାନ କରାଯାଇଛି ତାହା ତାଙ୍କୁ କିଞ୍ଚିତ୍ ପରିମାଣରେ ଆନନ୍ଦ ପ୍ରଦାନ କରିବ ଓ ନିରାମୟ ଜୀବନ ଯାପନ ପାଇଁ ପ୍ରେରଣା ଯୋଗାଇବ ।

ଅବଶ୍ୟ ଆମର ଏ ଉଦ୍ୟମ ଯଥେଷ୍ଟ ନୁହେଁ । ଏ ଦିଗରେ ଆହୁରି ଅନେକ କିଛି କରିବାକୁ ବାକି ଅଛି । ତା' ସତ୍ତ୍ୱେ ବିଶ୍ୱାସ କରାଯାଏ ଯେ —ପ୍ରାଥମିକ ପଦକ୍ଷେପ ସ୍ୱରୂପ ଏହି ଜୀବନୀ ସଙ୍କଳନଗୁଡ଼ିକ ଭବିଷ୍ୟତ ପାଇଁ ଆଲୋକବର୍ତ୍ତିକା ସଦୃଶ କାର୍ଯ୍ୟ କରିବ ।

ଉଚ୍ଚ ବିଦ୍ୟାଳୟ, ମହାବିଦ୍ୟାଳୟର କର୍ମକର୍ତ୍ତା ଏବଂ ଅଗଣିତ ପାଠକପାଠିକା ଏହି ସଙ୍କଳନ କ୍ରୟ କରି ପାଠ କଲେ ଆମ ଶ୍ରମ ସାର୍ଥକ ହୋଇପାରିବ ।

ଏ ଉଦ୍ୟମ ସତ୍ତ୍ୱେ ପାଠକ ସଂସଦର ସଦସ୍ୟମାନଙ୍କ ମନରେ ଯେ ଦୁଃଖ ନାହିଁ ତା' ନୁହେଁ, କର୍ତ୍ତବ୍ୟର ଅବହେଳା ଯୋଗୁ ପ୍ରତ୍ୟେକ ସଦସ୍ୟ ଦୁଃଖ ପ୍ରକାଶ କରନ୍ତି । ଏହାର କାରଣ ହେଉଛି କବି ସଚ୍ଚିଦାନନ୍ଦ ବର୍ମା, ଶିକ୍ଷା ପ୍ରସାରକ ଉପେନ୍ଦ୍ରନାଥ ପ୍ରଧାନ, ପଲ୍ଲୀକବି ମାଧବଚନ୍ଦ୍ର ମିଶ୍ର ଶର୍ମା, ପ୍ରାବନ୍ଧିକ କପିଳେଶ୍ୱର ଦାସ, ଜନସେବକ ରାଧାକୃଷ୍ଣ ବିଶ୍ୱାସରାୟ,

ଗବେଷକ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ସମାଲୋଚକ ଡଃ ଗୋପାଳ ଚନ୍ଦ୍ର ମିଶ୍ର ପ୍ରଭୃତି ଅଗଣିତ ପ୍ରତିଭାଧର ବ୍ୟକ୍ତି ଇହଲୀଳା ସାଙ୍ଗ କରିବାପରେ ସେମାନଙ୍କୁ ସମ୍ମାନିତ କରି ଜୀବନୀ ପୁସ୍ତକ ଛପାଇବା ପାଠକ ସଂସଦ ପକ୍ଷରେ ସମ୍ଭବପର ହୋଇପାରି ନାହିଁ । ସେହିପରି ମାଆ ରମାଦେବୀ, ସମାଜ ସେବକ ଶ୍ରୀ ଶରତ ଚନ୍ଦ୍ର ମହାରଣା ପ୍ରମୁଖ ବରେଣ୍ୟ ବ୍ୟକ୍ତି-ମାନଙ୍କୁ ପାଠକ ସଂସଦ ସମ୍ମାନିତ କରିପାରି ନାହିଁ । ଏଥିପାଇଁ ପ୍ରଥମ ପାଞ୍ଚବର୍ଷରେ ସମ୍ମାନିତ ହୋଇଥିବା ପ୍ରତିଭାଧର ବ୍ୟକ୍ତିଙ୍କ ଜୀବନୀ ଉପରେ ଏକ ବିଶେଷ ସଙ୍କଳନ ପ୍ରକାଶ ଓ ପାଠକ ସଂସଦ ଦ୍ୱାରା ସମ୍ମାନିତ ହୋଇ ନ ପାରିଥିଲେ ମଧ୍ୟ ଯେଉଁ ମହାନ୍ ବ୍ୟକ୍ତିଗଣ ଇହଲୀଳା ସାଙ୍ଗ କରିଛନ୍ତି ତାଙ୍କ ଜୀବନୀ ସଂଗ୍ରହର ଉଦ୍ୟମ କରି ଉତ୍କଳ ପାଠକ ସଂସଦ ଏକ ସଙ୍କଳନ ପ୍ରକାଶ କରିବା ପାଇଁ ଚେଷ୍ଟା କରିବ ।

ଏଠାରେ ଆଉ ଗୋଟିଏ କଥା ସୂଚାଇ ଦେବାକୁ ଉପଯୁକ୍ତ ମନେକରୁଛୁ, କଥାଟି ହେଉଛି ଉତ୍କଳ ପାଠକ ସଂସଦ ପକ୍ଷରୁ କଟକର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ଜୀବନ ସମ୍ପର୍କିତ ତଥ୍ୟ ସଂଗ୍ରହ କରାଯାଉଛି । ସେହି ତଥ୍ୟ ଉପରେ ଭିତ୍ତିକରି ଏକ ପରିଚିତି ପୁସ୍ତକ ପ୍ରକାଶ କରାଯିବ । ଏ କାର୍ଯ୍ୟଟି ଆସନ୍ତା ବର୍ଷ ଶେଷ ହୋଇଯିବ ବୋଲି ବିଶ୍ୱାସ କରାଯାଏ ।

ଏତଦ୍ ବ୍ୟତୀତ 'ଉତ୍କଳ ପାଠକ ସଂସଦ'ର ଶୁଭେଚ୍ଛୁ, ପୃଷ୍ଠପୋଷକ ଓ ସହାୟକ ରୂପେ ବିବେଚିତ ଯେଉଁ ମହାନ୍ ବ୍ୟକ୍ତିଗଣ ଏଇ ବିଗତ କେତେଦିନ ମଧ୍ୟରେ ପ୍ରାଣତ୍ୟାଗ କରିଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ଆମେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

ଶେଷରେ ଅଗଣିତ ପାଠକ, ପାଠିକା, ଲେଖକ, ଦର୍ଶକ, ଶ୍ରୋତା, କୃଷକ, ଶ୍ରମିକ ଏବଂ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିମାନଙ୍କର ସ୍ନେହ, ସଦ୍ଭାବ, ସଦିଚ୍ଛା ଚିରଦିନ ରହିଥାଉ, ଏହାହିଁ କାମନା ।

। ଇତି ।

ବ୍ରଜମୋହନ ମହାନ୍ତି
ସମ୍ପାଦକ

# କବିରାଜ ପଣ୍ଡିତ ପ୍ରୟାଗଦତ୍ତ ଜୋଷୀ : ସଂକ୍ଷିପ୍ତ ଜୀବନାୟନ

ଶ୍ରୀ ତୀର୍ଥାନନ୍ଦ ମିଶ୍ର

## ॥ ଏକ ॥

ଏକ ନିରଳସ ତଥା ସମାଜକଲ୍ୟାଣପରକ ସାଧନା ସବୁବେଳେ ସିଦ୍ଧିକୁ ବାଟ କଢ଼ାଇ ଆଣିଥାଏ । ସାଧକର ଅନ୍ତର୍ନିଷ୍ଠା, ଆତ୍ମବିଶ୍ୱାସ ଓ ଗଭୀର ଆତ୍ମାନୁଶୀଳନ ତାକୁ ପ୍ରତିକ୍ଷେତ୍ରରେ ଜୟଯୁକ୍ତ କରାଇ ଚାଲିଥାଏ । ପ୍ରତିକୂଳ ପରିସ୍ଥିତିମାନେ ଯେ ଆସନ୍ତି ନାହିଁ ତାହା ନୁହେଁ, ମାତ୍ର ସ୍ଥିର ନିଷ୍ଠିତ ମନ ସମ୍ମୁଖରେ ସେମାନେ ନୀରବ ହୋଇଯାନ୍ତି । ନିମ୍ନାଭିମୁଖୀ ଦମୁପରି ଏହି ଗତି ଅପରାଜେୟ ରହିଯାଏ । ବୟସ ହାର ମାନେ । ବାର୍ଦ୍ଧକ୍ୟର ସମସ୍ତ ଶିଥିଳ ସଙ୍କୋଚ ସେହି ବିବେକାନୁମୋଦିତ ସମର୍ପିତ ଦୃଢ଼ତା ନିକଟରେ ପରାଜୟ ବରଣ କରି ନତମସ୍ତକ ହୋଇଯାନ୍ତି । ଈପ୍ସିତ ଚରମ ମଧୁଲଗ୍ନଟି ଆସିଗଲେ ଯନ୍ତ୍ରଣା ମିଳନାନନ୍ଦରେ, ନିନ୍ଦା ପ୍ରଶଂସାରେ ଓ କୁତ୍ସା ଚନ୍ଦନରେ ରୂପାନ୍ତରିତ ହୋଇଯିବାକୁ ଆଉ ବିଳମ୍ବ ନଥାଏ । ଜାଷ୍ଟାସୂତାର ପୂଜାବେଦୀରେ ଶାମୁକାଟିଏ ନିଜକୁ ସମର୍ପଣ କରି ଚାଲିଥାଏ ଆଉ ସ୍ୱାତୀ ଲଗ୍ନର ଶୁଭବେଳାରେ ମୁକ୍ତାଟିଏ ମୁକୁଳି ପଡ଼ିବାର ଅପେକ୍ଷାରେ ଥାଏ ।

ଜୀବନରେ ବହୁ ଘାତ ପ୍ରତିଘାତରେ ଅବିଚଳିତ ରହି ନିଜ ଦୃଢ଼ ଆତ୍ମବଳର ପରିଚୟ ଦେଇ ଏକ ଜାତୀୟ ସଂଗ୍ରାମରେ ନିଜକୁ ପୂର୍ଣ୍ଣ ସମର୍ପିତ କରି ଦେଇଥିବା ମେଧାଭିଜ୍ଞ ଏକ ତ୍ୟାଗପୂତ ପ୍ରତିଭା ଜଣକ ହେଉଛନ୍ତି କବିରାଜ ପଣ୍ଡିତ ପ୍ରୟାଗଦତ୍ତ ଜୋଷୀ । କବିରାଜ ମହାଶୟ ଖଡ଼ିଆଳର ଜଣେ ଯୋଗଜନ୍ମା ମହାପୁରୁଷ । ତାଙ୍କର ପ୍ରତିଭା କେବଳ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ସୀମିତ ନଥିଲା । ଏକ ନଗର ବହୁ ଜନକଲ୍ୟାଣକାରିଣୀ ଧାରା ପରି ତାଙ୍କ ବ୍ୟକ୍ତିତ୍ୱରେ ଆୟୁର୍ବେଦ ଚିକିତ୍ସା, ରାଜନୈତିକ କର୍ମ, ସମାଜସେବା, ସାହିତ୍ୟର ସୃଜନଶୀଳ ଧାରା ତଥା ସମାଲୋଚନାତ୍ମକ ଧାରା ଏ ସମସ୍ତ ଗୁଣ ଏକତ୍ରିତ ହୋଇଥିଲା ।

୧୯୧୩ ମସିହା ଫେବୃୟାରୀ ୨୫ ତାରିଖରେ ପ୍ରୟାଗଦତ୍ତ ଚନ୍ଦ୍ରଶେଖର ପାଠଜୋଷୀଙ୍କ ଔରସରୁ ଏବଂ ବୃନ୍ଦାବତୀ ଦେବୀଙ୍କ ଗର୍ଭରୁ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତା ଥିଲେ ଖଡ଼ିଆଳ ରାଜବଂଶର ରାଜ-ପୁରୋହିତ । ସେ ଏକ ଖ୍ୟାତିସମ୍ପନ୍ନ ବଂଶର ଉତ୍ତରପୁରୁଷ ଥିଲେ । ନିଜ ବଂଶ ସମ୍ପର୍କରେ କବିରାଜ ମହାଶୟଙ୍କ ସିଦ୍ଧାନ୍ତ ହେଉଛି ଯେ ପ୍ରାଚୀନ ଇତିହାସ ତଥା ଆଞ୍ଚଳିକ ଜନଶ୍ରୁତି ଅନୁସାରେ ପୂର୍ବର ପାଟଣାରାଜ୍ୟ ବା ଅଧୁନାତନ ବଲାଙ୍ଗୀର ଜିଲ୍ଲାରେ ଆଠଜଣ ମଲ୍ଲିକ ହିଁ ଶାସନ କରୁଥିଲେ । ଏହି ଶାସନ ପଦ୍ଧତିକୁ 'ଆଠମଲ୍ଲିକିଆ ଶାସନ' ବୋଲି କୁହାଯାଉଥିଲା । ପାଳିକରି ଆଠଜଣ ମଲ୍ଲିକ ବା ଦଳପତି ଏହି ଶାସନ କାର୍ଯ୍ୟ ନିର୍ବାହିତ କରୁଥିଲେ । ଏହି ମଲ୍ଲିକମାନଙ୍କ ମଧ୍ୟରେ ଅନ୍ୟତମ ମଲ୍ଲିକ ଥିଲେ ଚକ୍ରଧର ପାଣିଗ୍ରାହୀ । ସେ ସମୟରେ ପିତୃହୀନ ନିରାଶ୍ରୟ ଚୌହାନ ରମାଇଦେବ ଏହି ପାଣିଗ୍ରାହୀଙ୍କ ଗୃହରେ ଆଶ୍ରୟ ନେଇଥିଲେ ଏବଂ ଚକ୍ରଧର ପାଣିଗ୍ରାହୀଙ୍କୁ ଧର୍ମପିତା କରି କାଳ କଟାଉଥିଲେ । କାଳକ୍ରମେ ରମାଇଙ୍କ ମନରେ ସାମ୍ରାଜ୍ୟ ଲିପ୍ସା ସୃଷ୍ଟି ହେଲା । କ୍ରମେ ବୟୋବୃଦ୍ଧି ହୁଅନ୍ତେ ଏକଦା ସେ ସୁଯୋଗ ଦେଖି ସାତଜଣ ମଲ୍ଲିକଙ୍କୁ ବଧ କରି ରାଜ୍ୟଶାସନ ପାଇଁ ନିଜପଥ ନିଷ୍କଣ୍ଟକ କରିଦେଲେ । ମାତ୍ର ପୁତ୍ର ରୂପେ ରମାଇ ଚକ୍ରଧର ପାଣିଗ୍ରାହୀଙ୍କ-ଠାରୁ ସମସ୍ତ ସାହାଯ୍ୟ ପାଉଥିବାରୁ ତାଙ୍କୁ ଆଉ ହତ୍ୟା କଲେ ନାହିଁ ।

ତଥାପି ମଧ୍ୟ ରମାଇଙ୍କ ପଥ କଣ୍ଟକଶୂନ୍ୟ ନଥିଲା । ରମାଇ ସିଂହାସନକୁ ବସିବାକୁ ଯିବାବେଳେ ମୃତ ସାତଜଣଙ୍କର ପ୍ରେତାତ୍ମା ତାଙ୍କୁ

ନାନା ଭାବରେ ଭଯ଼ଭୀତ କରିବାକୁ ଲାଗିଲେ । ଏହି ପ୍ରେତମାନେ ରମାଇଙ୍କୁ ପରାମର୍ଶ ଦେଲେ ଯେ ରାଜାକୁ ମାରିଲା ପରେ ରାଜା ହେବାର ବାଧା ଥିବାରୁ ରମାଇ ଜଣଙ୍କୁ ଗୁଣ୍ଡ ଦେବା ଉଚିତ ନୁହେଁ, ତେଣୁ ସେ ତାକୁ ହତ୍ୟା କରନ୍ତୁ । ତତ୍କାଳୀନ ଓଡ଼ିଶାର ତାନ୍ତ୍ରିକ କେନ୍ଦ୍ର ଏହି କାଉଁରୀ ପାଟଣାରେ ପ୍ରେତଗ୍ରସ୍ତ ରମାଇ ବଡ଼ ଅସୁବିଧାରେ ପଡ଼ିଲେ । ଏହି ପ୍ରେତାତ୍ମାମାନଙ୍କୁ ସାଧ୍ୟ କରିବାକୁ ରମାଇ ବାଧ୍ୟ ହୋଇ ସେ ସମୟର ବିଶିଷ୍ଟ ତାନ୍ତ୍ରିକ ସନାତନ ପଣ୍ଡାଙ୍କ ଆଶ୍ରୟ ନେଲେ ।

ପଣ୍ଡା ମହାଶୟ ପାଣିଗ୍ରାହୀଙ୍କ ପ୍ରକୃତ ନଧି ଭାବରେ ଗୋଟିଏ ମେଣ୍ଢାକୁ ବଳି ଦେଇ ପ୍ରେତାତ୍ମାମାନଙ୍କୁ ଶାନ୍ତ କଲେ । ନରସିଂହ ଦେବ ରମାଇ ତଥାପି ରାଜ-ସିଂହାସନରେ ବସିବାକୁ ସାହସ ନ କରନ୍ତେ ପଣ୍ଡା ମହୋଦୟ ନିଜେ ଗାଦିରେ ବସି ରମାଇଙ୍କୁ କୋଳରେ ବସାଇ ସମସ୍ତ ସଭାସଦଙ୍କ ସମ୍ମୁଖରେ ତାଙ୍କ ମଥାରେ ପାଟ ବାନ୍ଧିଦେଲେ । କୃତଜ୍ଞତାର ନିଦର୍ଶନ ସ୍ୱରୂପ ରାଜା ରମାଇ ଦେବ ପଣ୍ଡାଙ୍କୁ କୁଳାଚାର୍ଯ୍ୟ ରୂପେ ବରଣ କଲେ ଏବଂ ସମ୍ମାନର ସହ 'ଜୋଶୀ' ସଂଜ୍ଞା ପ୍ରଦାନ କଲେ । ରାଜାଙ୍କ ମୁଣ୍ଡରେ ପାଟ ବାନ୍ଧିବାର ବ୍ୟକ୍ତି ଜଣକ କେବଳ 'ପାଟଜୋଶୀ' ଓ ଅନ୍ୟମାନେ କେବଳ 'ଜୋଶୀ' ନାମରେ ନାମିତ ହେବାକୁ ଲାଗିଲେ । ତେଣୁ ପ୍ରୟାଗଦତ୍ତଙ୍କ ଉପାଧି 'ଜୋଶୀ' ଜ୍ୟୋତିଷ ଶବ୍ଦର ଅପଭ୍ରଂଶ ନୁହେଁ । ଏହା ମୁଖ୍ୟତଃ ଏକ ଉପାଧି ପରକ ଶବ୍ଦ ଓ ଶ୍ରଦ୍ଧା ତଥା କୃତଜ୍ଞତାର ନିଦର୍ଶନ ସ୍ୱରୂପ ରମାଇ ଦେବ ଏହା ତାଙ୍କ ପୂର୍ବପୁରୁଷଙ୍କୁ ପ୍ରଦାନ କରିଥିଲେ । ସନାତନଙ୍କ ଉତ୍ତର ପୁରୁଷମାନଙ୍କ ପ୍ରତି ଏ ସମ୍ମାନ କେବେ ବି ଖଡ଼ିଆଳରେ ପରିବର୍ତ୍ତିତ ହୋଇନଥିଲା । ପ୍ରୟାଗ ଦତ୍ତଙ୍କ ପିତା ଚନ୍ଦ୍ରଶେଖର ପାଟଜୋଶୀ ଏକାଦିକ୍ରମେ ତିନିଜଣ ରାଜା—ବ୍ରଜରାଜ ସିଂହ, ବୀର ବିକ୍ରମଦେବ ଓ ଆର୍ତ୍ତତ୍ରାଣ ଦେବ ତିନିଜଣଙ୍କ ମୁଣ୍ଡରେ ପାଟ ଭିଡ଼ିଥିଲେ । ଏହି ପରମ୍ପରା ରାଜପଦ ଥିବା ପର୍ଯ୍ୟନ୍ତ ଅବ୍ୟାହତ ଥିଲା, ମାତ୍ର ରାଜ୍ୟ ଗଲାପରେ ବନ୍ଦ ହୋଇଗଲା ।

## ॥ ଦୁଇ ॥

ପ୍ରୟାଗଦତ୍ତଙ୍କ ବାଲ୍ୟ ଜୀବନ ଅତିବାହିତ ହୋଇଥିଲା ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ । ବାଲ୍ୟକାଳରୁ ତାଙ୍କର ଶିକ୍ଷାପ୍ରତି ଆଗ୍ରହ ଓ ରୁଚି ଥିଲା

ପ୍ରବଳ । ଖଡ଼ିଆଳରେ ସେ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଲାଭ କଲାପରେ ଉଚ୍ଚଶିକ୍ଷା ପାଇଁ ସେ ରାୟପୁର ଯାତ୍ରା କଲେ ଓ ୧୯୩୨ ମସିହାରେ ଏହିଠାରୁ କୃତିତ୍ୱର ସହ ସେ ମ୍ୟାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଆନୁଷ୍ଠାନିକ ଭାବରେ ଏହିଠାରୁ ତାଙ୍କର ଶିକ୍ଷାଗତ ଜୀବନ, ସହିତ ପରିସମାପ୍ତ ହୋଇଛି ଆଜୀବନ ସେ ମୁଖ୍ୟତଃ ଜଣେ ଜ୍ଞାନପିପାସୁ ସାଧକ ଭାବେ ନିଜ ଜୀବନକୁ ଅତିବାହିତ କରି ଚାଲିଛନ୍ତି । ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତାଙ୍କ କର୍ମମୟ ଜୀବନର ଶୁଭାରମ୍ଭ ସେ କରନ୍ତି ଏଙ୍ଗ୍ଲୋ-ଭର୍ଣ୍ଣାକୁଲର ମିଡ଼ିଲ ସ୍କୁଲରେ ଜଣେ ସହକାରୀ ଶିକ୍ଷକ ରୂପେ । କେବଳ ଜଣେ ଶିକ୍ଷକ ହୋଇ ଜୀବନ ଅତିବାହିତ କରିବା ତାଙ୍କ ପ୍ରତିଭାର ବାଧ୍ୟପ୍ରେରିତ କର୍ମ ନଥିଲା । ଉଚ୍ଚାଭିଳାଷ ଓ ଅନ୍ତର୍ନିଷ୍ଠା ତାଙ୍କୁ କାଳକ୍ରମେ ଅଧିକ ଜ୍ଞାନାନୁସନ୍ଧିତ୍ସୁ କରିଦେଲା ।

ଏକ ସମ୍ଭ୍ରାନ୍ତ ପରିବାରର ସନ୍ତାନ ହୋଇଥିବାରୁ ଓ ବଂଶ ପରମ୍ପରାକ୍ରମେ ସଂସ୍କୃତ ଭାଷା ସାହିତ୍ୟ ପ୍ରତି ନିଜ ଭିତରେ ଅହେତୁକ ଶ୍ରଦ୍ଧା ପୋଷଣ କରିଥିବାରୁ ପ୍ରୟାଗଦତ୍ତ ସ୍ୱାଭାବିକ ଭାବେ ସଂସ୍କୃତ ଭାଷା ଶିକ୍ଷା କରିବାକୁ ଲାଗିଲେ । ଏହା ଭିତରେ ଆୟୁର୍ବେଦ ପ୍ରତି ତାଙ୍କର ପ୍ରବଳ ମମତା ଦେଖାଦେଲା । ୧୯୩୪ ମସିହାରୁ ସେ ଏହି ବିଦ୍ୟାଶିକ୍ଷା ପାଇଁ କାଶୀ ଯାତ୍ରା କଲେ ଓ କାଶୀର ତତ୍କାଳୀନ ବରିଷ୍ଠ କବିରାଜ ଧର୍ମଦାସ ଚରକାଚାର୍ଯ୍ୟଙ୍କଠାରୁ ଆୟୁର୍ବେଦ ଦୀର୍ଘ ଚାରିବର୍ଷ କାଳ ଅର୍ଥାତ୍ ୧୯୩୮ ମସିହା ପର୍ଯ୍ୟନ୍ତ ଶିକ୍ଷା କରିଥିଲେ । ନିଜର ଦୃଢ଼ ମନୋବଳ ଓ ଶ୍ରଦ୍ଧାନ୍ୱିତ ଅଟଳ ନିଷ୍ଠା ହେତୁ ସେ ୧୯୩୮ ମସିହାରେ ଅଖିଳ ଭାରତ-ବର୍ଷୀୟ ଆୟୁର୍ବେଦର ବିଦ୍ୟାପୀଠ ପୁନାରୁ ବାରାଣସୀ କେନ୍ଦ୍ରରେ ପରୀକ୍ଷା ଦେଇ ସର୍ବଭାରତୀୟ ସ୍ତରରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । କେବଳ ଉପାଧିଟିଏ ନେଇ ସେ ପୁନର୍ବାର ଓଡ଼ିଶା ଆସିନଥିଲେ । କାଶୀରେ ରହଣି କାଳରେ ସେ ଚାରିଖଣ୍ଡ ସଂସ୍କୃତ ଆୟୁର୍ବେଦ ଗ୍ରନ୍ଥର ହିନ୍ଦୀ ଅନୁବାଦ କରିଥିଲେ । ଅଦ୍ୟାବଧି ତାହାର ଅନେକ ସଂସ୍କରଣ ପ୍ରକାଶିତ ହୋଇ ସାରିଲାଣି ଏବଂ ପ୍ରୟାଗଦତ୍ତଙ୍କୁ ଅଧିକ ସମ୍ମାନ ଓ ପ୍ରତିଷ୍ଠା ଦେଇ ସାରିଲାଣି । କାଶୀ ହିଁ ତାଙ୍କ ସାଧନାର ଧାରାକୁ ବହୁଧା ବ୍ୟଞ୍ଜିତ କରିଦେଇଥିଲା । ଏହି

ଅସନ୍ତୋଷ ଦ୍ରବ୍ୟ ଅଧ୍ୟୟନ ପ୍ରବୃତ୍ତିକୁ ପ୍ରୟାଗଦତ୍ତ, ଅଦ୍ୟାବଧି ମଧ୍ୟ ଜାରି ରଖିଛନ୍ତି ।

ଜଣେ ରାଜନୈତିକ କର୍ମୀ ହିସାବରେ ଦେଶମାତୃକାର ସେବା କରିବାକୁ ୧୯୩୦ ମସିହାରୁ ସ୍ୱପ୍ନ ଦେଖି ଆସିଥିଲେ । ଶ୍ୱେତ ବଣିକ-ମାନଙ୍କ ଶୋଷଣ ନୀତି ବିରୁଦ୍ଧରେ ସେତିକିବେଳୁ ତାଙ୍କ ସତର ବର୍ଷର ତାରୁଣ୍ୟରେ ପ୍ରଳୟଙ୍କରୀ ବିପ୍ଳବର ବନ୍ୟା ଦେଖା ଦେଇଥିଲା । ମାତ୍ର ମହାତ୍ମା ଗାନ୍ଧିଙ୍କ ଅହିଂସା ଧର୍ମଦ୍ୱାରା ସେ ବହୁ ଭାବରେ ପ୍ରଭାବିତ ହୋଇ ନିଜ ଉଗ୍ର ଜାତୀୟବାଦୀ ମନୋବୃତ୍ତିକୁ ଲଗାମ ଦେଇ ଶାନ୍ତ ଓ ସମାହିତ କରିଥିଲେ । କାଶୀ ଯିବା ପୂର୍ବରୁ ମାହାତ୍ମାଗାନ୍ଧିଙ୍କ ଭାବଶିଷ୍ୟତ୍ୱ ଗ୍ରହଣ କରି ସେ ନିଶାନିବାରଣ ତଥା ପିକେଟିଂ ଆଦିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ମାତ୍ର ଏହା ସେତେ ପ୍ରଭାବଶାଳୀ ଓ ପୂର୍ଣ୍ଣ ସମର୍ପିତ ନଥିଲା । ୧୯୩୮ ମସିହା, କାଶୀରୁ ଆସିବା ପରେ ପ୍ରୟାଗଦତ୍ତଙ୍କ ରାଜନୈତିକ ଜୀବନ ଅଧିକ ସକ୍ରିୟ ହୋଇ ଉଠିଲା । ଏହି ବର୍ଷ ସେ କଂଗ୍ରେସରେ ସକ୍ରିୟ ଭାବରେ ଯୋଗଦାନ କଲେ । ଦୀର୍ଘ ବାରବର୍ଷକାଳ ଅର୍ଥାତ୍ ୧୯୫୦ ମସିହା ପର୍ଯ୍ୟନ୍ତ ସେ ପ୍ରଦେଶ କଂଗ୍ରେସ କମିଟିର ସଭ୍ୟ ହୋଇ ରହିଲେ । ସମସ୍ତ ସମାଜ କଲ୍ୟାଣ ପରକ ଓ ଲୋକହିତକର ଅନୁଷ୍ଠାନର ସେ ମୁଖ୍ୟ ପରିଚାଳକ ହୋଇଥିଲେ । ଖଡ଼ିଆଳ ୟୁନିଅନ୍ ବୋର୍ଡ଼ର ଭାଇସ ଚେୟାରମ୍ୟାନ ପଦରେ ସେ କିଛିକାଳ ଅଧିଷ୍ଠିତ ହୋଇଥିଲେ ।

ମାତ୍ର ଗ୍ରାମ ପଞ୍ଚାୟତ ଆଇନ ପ୍ରଣୟନ ହେବାରୁ ୧୯୫୦ ମସିହାରେ ଖଡ଼ିଆଳ ଗ୍ରାମ ପଞ୍ଚାୟତର ପ୍ରଥମ ସରପଞ୍ଚ ରୂପେ ନିର୍ବାଚିତ ହୋଇ ସେ ଏହି ଅଞ୍ଚଳର ବିଭିନ୍ନ ଗଠନମୂଳକ କର୍ମରେ ଦୀର୍ଘ ପାଞ୍ଚବର୍ଷ କାଳ ମନୋନିବେଶ କରିଥିଲେ । ଏହାପରେ ମଧ୍ୟ ତାଙ୍କର ଏହି ଜନସେବା ଅବ୍ୟାହତ ରହିଲା । ବ୍ଲକ୍ ଉନ୍ନୟନ କମିଟିର ସଦସ୍ୟ ଭାବେ ଅନେକ ବର୍ଷ ଅବସ୍ଥାପିତ ହୋଇ ସେ ବିଭିନ୍ନ ଲୋକକଲ୍ୟାଣମୂଳକ କର୍ମରେ ନିଜକୁ ନିୟୋଗ କରିଥିଲେ । ଏକ ନିଷ୍ଠାପର ବ୍ରାହ୍ମଣ ପରି-ବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ପ୍ରୟାଗଦତ୍ତ ଅନ୍ୟମାନଙ୍କ ପରି କୁସଂସ୍କାର ଗ୍ରସ୍ତ ଓ ସଙ୍କୀର୍ଣ୍ଣମନା ନଥିଲେ । ବିଶ୍ୱକୁ କୁଟୁମ୍ବ ଭଳି ଗ୍ରହଣ କରିବାର ଉଦାରତା ତାଙ୍କଠାରେ ପୂର୍ଣ୍ଣ ସମାହିତ ହୋଇଥିଲା ।

ମହାତ୍ମାଗାନ୍ଧିଙ୍କ ହରିଜନ ଉଦ୍ଧାର କାର୍ଯ୍ୟକ୍ରମକୁ ଉତ୍ସାହିତ କରିବା ପାଇଁ ସେ ହରିଜନମାନଙ୍କ ସମସ୍ତ ହୀନମନ୍ୟ ଭାବନାକୁ ଦୂର କରିବାକୁ ବଦ୍ଧପରିକର ହୋଇଥିଲେ । ଗୀତାରେ ପ୍ରଦତ୍ତ ଗୁଣ ତଥା କର୍ମ ଭେଦରେ ବର୍ଣ୍ଣ ପ୍ରକରଣର ସମର୍ଥନ କରି ସେ ସମାଜର ତଥାକଥିତ ଅସ୍ପୃଶ୍ୟ ବା ନୀଚ ବର୍ଣ୍ଣର ଲୋକଙ୍କୁ ଉନ୍ନତ ପଙ୍‌ କ୍ତିରେ ସ୍ଥାନଦେବାକୁ ଆନ୍ଦୋଳନ ଆରମ୍ଭ କରିଦେଲେ । ବିଭିନ୍ନ ଘାତ ପ୍ରତିଘାତ ମଧ୍ୟରେ ସେ ନିଜର ଏହି କର୍ମକୁ ଅବ୍ୟାହତ ରଖିଲେ । ତାଙ୍କର ବିଶ୍ୱାସ ଦୃଢ଼ ଥିଲି ଯେ ସମସ୍ତେ ଈଶ୍ୱରଙ୍କ ସନ୍ତାନ । ତେଣୁ ତାଙ୍କ ମନ୍ଦିରକୁ କେହି ପ୍ରବେଶ ନ କରିପାରିବା ଏକାନ୍ତ ଦୋଷାବହ । ଏହି ହତଭାଗ୍ୟ ତଥା ସମାଜ ଦ୍ୱାରା ଅତ୍ୟାଚାରିତ ନିରିହ ଲୋକମାନଙ୍କୁ ପ୍ରୟାଗଦତ୍ତ ମନ୍ଦିରରେ ପ୍ରବେଶ କରାଇବା ପାଇଁ ଆନ୍ଦୋଳନ ଆରମ୍ଭ କରି ଦେଇଥିଲେ । ଏତଦ୍‌ବ୍ୟତୀତ ସେ ଅନେକ ସମାଜ ସଂସ୍କାରମୂଳକ କାର୍ଯ୍ୟରେ ମଧ୍ୟ ନେତୃତ୍ୱ ନେଇ-ଥିଲେ । ସେ ସମୟରେ ବିଧବାମାନେ ସମାଜରେ ଅତି ଦୟନୀୟ ଜୀବନଯାପନ କରୁଥିଲେ । ସେମାନଙ୍କୁ ପୁନର୍ବାର ଥଇଥାନ କରିବାର ସ୍ୱପ୍ନ ପ୍ରୟାଗଦତ୍ତ ଦେଖି ଆସିଥିଲେ । ଏହାର ପ୍ରଥମ ପଦକ୍ଷେପ ଭାବେ ସେ ବିଧବା ତଥା ସ୍ୱାମୀ ପରିତ୍ୟକ୍ତାମାନଙ୍କ ପୁନର୍ବିବାହକୁ କାର୍ଯ୍ୟକାରୀ କଲେ ।

ଶିକ୍ଷା ହିଁ ଜାତିର ନୈତିକ ମାନଦଣ୍ଡକୁ ଦୃଢ଼ କରେ । ପ୍ରୟାଗଦତ୍ତ ଅନୁଭବ କରିଥିଲେ ଶିକ୍ଷାହୀନତା ହିଁ ପ୍ରଗତିର ପ୍ରଧାନ ଅନ୍ତରାୟ । ନିଜ ଅଞ୍ଚଳରେ ବ୍ୟାପକ ଗଣଶିକ୍ଷା ପାଇଁ ତାଙ୍କ ଉଦ୍ୟମର ଅନ୍ତ ନଥିଲି । ସ୍ୱାଧୀନତାତ୍ତର କାଳରେ ନିଜ ଅଞ୍ଚଳର ଶିକ୍ଷା ବିକାଶ ପାଇଁ ସେ ସର୍ବସାଧାରଣ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସୁପରିଚାଳନା ପାଇଁ ପ୍ରତ୍ୟକ୍ଷ ସାହାଯ୍ୟ ଦେଇଥିଲେ । କିଛିକାଳ ସେ ଏହି ବିଦ୍ୟାଳୟର ପରିଚାଳନା କମିଟିର ସମ୍ପାଦକ ରୂପେ ମଧ୍ୟ ଅବସ୍ଥାପିତ ଥିଲେ । ମାତ୍ର ପରେ ଏହି ବିଦ୍ୟାଳୟ ସରକାରଙ୍କ ଦ୍ୱାରା ସ୍ୱୀକୃତି ପାଇଲାପରେ ପ୍ରୟାଗଦତ୍ତ ସେ ବିଦ୍ୟାଳୟର ସମ୍ପାଦକ ଦାୟିତ୍ୱ ଛାଡ଼ି ଦେଇଥିଲେ । ବିଭିନ୍ନ ଲୋକ କଲ୍ୟାଣକର ସଙ୍ଗଠନମାନଙ୍କର ସୁପରିଚାଳନାରେ ପ୍ରୟାଗଦତ୍ତ ନିଜର ଅପରିସୀମ ସଙ୍ଗଠନ ଶକ୍ତିର ପରିଚୟ ଦେଇଛନ୍ତି ।

## ॥ ତନି ॥

ସାହିତ୍ୟ ମନୁଷ୍ୟକୁ କେବଳ ଲୌକିକ ସିଦ୍ଧି ଦିଏ ନାହିଁ, ଲୋକୋତ୍ତର ସିଦ୍ଧି ଦେବାକୁ ମଧ୍ୟ ଏହା ସଚେଷ୍ଟ ହୋଇଥାଏ । ପ୍ରୟାଗ ଦତ୍ତଙ୍କ ହୃଦୟର ଗୋପନ କ୍ଷେତ୍ରରେ ଲୁକ୍କାୟିତ ଥିବା ସୃଷ୍ଟି ପ୍ରତିଭା କ୍ରମେ ଅନୁକୂଳ ପାଣିପାଗରେ ବିକଶିତ ହେବାକୁ ଲାଗିଲା । ଖଡ଼ିଆଳକୁ ବୁଦ୍ଧି ହଂସ କେଳିପୁର କରିବା ପାଇଁ ପ୍ରୟାଗଦତ୍ତ ଧୀରେ ଅଗ୍ରଗାମୀ ହେଲେ । ତାଙ୍କର ନିରଳସ ପ୍ରଚେଷ୍ଟାରେ ତଥା ସେ ଅଞ୍ଚଳର ପ୍ରସିଦ୍ଧ ସାରସ୍ୱତ ସାଧକ ଲାଲ ରୁଦ୍ରମାଧବ ଦେବ ଓ ଶ୍ରୀ ଅନୁପ ସିଂହଦେବଙ୍କ ସହଯୋଗରେ ସେ ଓଡ଼ିଶାର ପ୍ରାଚୀନ ସାରସ୍ୱତ ଅନୁଷ୍ଠାନ ଖଡ଼ିଆଳ ସାହିତ୍ୟ ସମିତିର ପୁନର୍ଗଠନ କରିଥିଲେ । ୧୮୮୩ ମସିହାରୁ ଆରମ୍ଭ ହୋଇଥିବା ଏହି ସାହିତ୍ୟ ଅନୁଷ୍ଠାନ ପ୍ରୟାଗଦତ୍ତଙ୍କ ନବୀନ ପ୍ରଚେଷ୍ଟାରେ ନବଯୌବନ ଲାଭ କରି ଖଡ଼ିଆଳରେ ଏକ ଉତ୍କୃଷ୍ଟ ସାରସ୍ୱତ ପରିମଣ୍ଡଳ ସୃଷ୍ଟି କରିଥିଲା ।

ଏହାପରେ ତାଙ୍କର ଦୃଷ୍ଟି ପଡ଼ିଥିଲା ଖଡ଼ିଆଳର ପ୍ରାଚୀନ ଗ୍ରନ୍ଥମାନଙ୍କର ପୁନଃପ୍ରକାଶ ଉପରେ । ଖଡ଼ିଆଳର ତତ୍କାଳୀନ ରାଜା ଅନୁପ ସିଂହଦେବଙ୍କ ପ୍ରୋତ୍ସାହନରେ ପ୍ରୟାଗଦତ୍ତ ରୁଦ୍ରମାଧବ ଦେବଙ୍କ ସହ ୧୯୫୦-୫୫ ମସିହାରେ ସେ 'ଖଡ଼ିଆଳ କୁସୁମ'ର ପ୍ରଥମ ଓ ଦ୍ୱିତୀୟ ଭାଗ ପ୍ରକାଶ କରିଥିଲେ । ରାଜା ବ୍ରଜରାଜ ସିଂହଙ୍କ ଦ୍ୱାରା ରଚିତ ବଳାହକ ଚଉତିଶା ଓ ପଦ୍ୟରେ ରଚିତ ଶ୍ରୀ ସତ୍ୟନାରାୟଣ ବ୍ରତକଥାର ଶୁଦ୍ଧ ସମ୍ପାଦନା କରି ଏ ଦୁଇଟିକୁ ମଧ୍ୟ ପ୍ରକାଶ କରିଥିଲେ । ବ୍ରଜରାଜଙ୍କ ସମଗ୍ର ରଚନାବଳୀକୁ ଅନୁସନ୍ଧାନ କରି ତାଙ୍କୁ ଏକ ଗ୍ରନ୍ଥାବଳୀ ରୂପେ ପ୍ରକାଶ କରିବା ପାଇଁ ତାଙ୍କର ମଧ୍ୟ ଅଭିଳାଷ ଥିଲା । ଶେଷରେ ପ୍ରୟାଗଦତ୍ତଙ୍କ ଉଦ୍ୟମରେ ୧୯୭୫ ମସିହାରେ ବ୍ରଜରାଜ ଗ୍ରନ୍ଥାବଳୀ ସରକାରଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ।

କେବଳ ସଂଗ୍ରାହକ ଭାବରେ ନୁହେଁ ରଙ୍ଗମଞ୍ଚ ସଂସ୍କାରକ ଭାବରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପ୍ରୟାଗଦତ୍ତ ଯେତେ-ବେଳେ ମାତ୍ର ଷଷ୍ଠ ଶ୍ରେଣୀର ଛାତ୍ର, ସେତେବେଳେ ସେ ଖଡ଼ିଆଳରେ

ନାଟକ ଅଭିନୟରେ ଅଂଶଗ୍ରହଣ କରିଥିଲେ । ଦୀର୍ଘ ଦିନର ଅଭିଜ୍ଞତା ସମନ୍ୱୟରେ ତାଙ୍କୁ ଜଣେ କୁଶଳୀ ଅଭିନେତା, ନିର୍ଦ୍ଦେଶକ ଓ ନାଟ୍ୟକାର ଭାବରେ ଗଢ଼ି ତୋଳିଲା । ଅବହେଳିତ କୋଶଲୀ ଭାଷାରେ ସେ 'କପଟ ବିବାହ' ନାମରେ ଏକ ନାଟକ ମଧ୍ୟ ରଚନା କରିଥିଲେ ଏବଂ ଏହି ନାଟକଟି ବହୁବାର ବିଭିନ୍ନ ରଙ୍ଗମଞ୍ଚରେ ୧୯୪୦-୪୧ ମସିହାରେ ସଫଳତାର ସହ ଅଭିନୀତ ହୋଇ ପର୍ଯ୍ୟାପ୍ତ ଲୋକପ୍ରିୟତା ଲାଭ କରିଥିଲା । ମାତ୍ର ଦୁଃଖର କଥା ପ୍ରୟାଗଦତ୍ତଙ୍କ ଏହି ନାଟକଟି ଏବେ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଛି । ଏହି ନିରଳସ ସାଧକ ଜଣକ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସୃଷ୍ଟି ଅପେକ୍ଷା ସଙ୍ଗଠନକୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଏକ ସଙ୍ଗଠିତ ସାମୂହିକ ଉଦ୍ୟମ ଯେ ବ୍ୟକ୍ତିଗତ ସୃଷ୍ଟି ଅପେକ୍ଷା ଅଧିକ ପ୍ରଭାବଶାଳୀ ଏହା ପ୍ରୟାଗଦତ୍ତ ସ୍ପଷ୍ଟ ଅନୁଭବ କରିଥିଲେ । ତେଣୁ କଳା, ସଂସ୍କୃତି ଓ ସମାଜ କ୍ଷେତ୍ରରେ ତାଙ୍କ ସଂଗଠକ ମନୋଭାବ ଖଡ଼ିଆଳରେ ଏକ ଜାଗ୍ରତ ଭାବବୋଧ ସୃଷ୍ଟି କରିବାରେ ସକ୍ଷମ ହୋଇଥିଲା ।

ପ୍ରୟାଗଦତ୍ତ ଏକାନ୍ତ ସରଳ ଓ କବିତ୍ୱମୟ ହୃଦୟଟିର ଅଧିକାରୀ ହୋଇଥିଲେହିଁ ସେ ଖୁବ୍ କମ୍ କବିତା ରଚନା କରିଛନ୍ତି । ମାତ୍ର ଆଜିର ଖଡ଼ିଆଳ ଅଞ୍ଚଳରେ ଯେଉଁ ସାହିତ୍ୟିକ ଜାଗରଣ ପରିଲକ୍ଷିତ ହୁଏ, ତାହା ପ୍ରୟାଗଦତ୍ତଙ୍କ ଆନ୍ତରିକ ପ୍ରୟାସର ଅମୃତମୟ ଫଳଶ୍ରୁତି ମାତ୍ର । କବିତା ଅପେକ୍ଷା ପ୍ରବନ୍ଧ ରଚନା ପ୍ରତି ତାଙ୍କର ରୁଚି ଅଧିକ ଥିଲା । ସେ ଅନେକ ପ୍ରବନ୍ଧ ରଚନା କରି ନିଜର ଜ୍ଞାନ ଓ ଉନ୍ନତ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ଦେଇଛନ୍ତି । ଇତିହାସରୁ ଏକ ସ୍ୱତନ୍ତ୍ର କୋଶଳ ପ୍ରଦେଶର ସ୍ଥିତିକୁ ଅନୁଭବ କରି ସେ ଏହି ବିସ୍ତୃତ ଭୂଖଣ୍ଡରେ ବାସ କରୁଥିବା ଅଧିବାସୀଙ୍କ ଭାଷାକୁ ଅତି ସୂକ୍ଷ୍ମ ଦୃଷ୍ଟିରେ ଅନୁଧ୍ୟାନ କରିଛନ୍ତି ଓ ଏମାନଙ୍କ ଭାଷା ଯେ ଓଡ଼ିଆ ଭାଷାଠାରୁ ସ୍ୱତନ୍ତ୍ର ତଥା ଓଡ଼ିଆ ଭାଷାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ, ଏହା ଅନୁଭବ କରିଛନ୍ତି । ନିଜର ଏହି ଚିନ୍ତାଧାରାକୁ ସେ ବିଭିନ୍ନ ପ୍ରବନ୍ଧ ତଥା ଗ୍ରନ୍ଥ ମଧ୍ୟରେ ପ୍ରକାଶ କରି ପ୍ରୟାଗଦତ୍ତ ସ୍ୱତନ୍ତ୍ର କୋଶଲୀ ଭାଷାର ପ୍ରଚଳନ ପାଇଁ ଅକ୍ଳାନ୍ତ ଉଦ୍ୟମ କରି ଆସିଛନ୍ତି । ଓଡ଼ିଶା ରାଜ୍ୟର ପଶ୍ଚିମ ଭାଗ ଓ ମଧ୍ୟପ୍ରଦେଶର

ପୂର୍ବାଞ୍ଚଳକୁ ନେଇ ସେ କୋଶଳ ଦେଶର ସ୍ଥିତି ନିରୂପଣ କରି ଏହାର ଭାଷାଭାଷୀମାନଙ୍କୁ କୋଶଲୀ ଭାଷା ପରିବାରଭୁକ୍ତ କରିଛନ୍ତି ।

ସେ ସ୍ୱୀୟ ଗ୍ରନ୍ଥ 'କୋଶଲୀ ଭାଷାର ସଂକ୍ଷିପ୍ତ ପରିଚୟ'ର ପ୍ରାକ୍ କଥନରେ କହିଛନ୍ତି, ଆଧୁନିକ ଯୁଗର ଐତିହାସିକ ବିଡ଼ମ୍ବନାବଶତଃ ଛିନ୍ନଛିନ୍ନ ହୋଇ ଯାଇଥିଲେହେଁ ଭାଷା ଓ ସଂସ୍କୃତି ଓ ଦୃଷ୍ଟିରୁ ଏହା (କୋଶଳ ଦେଶ) ବର୍ତ୍ତମାନର ଓଡ଼ିଶା ରାଜ୍ୟର ପଶ୍ଚିମ ପାର୍ଶ୍ୱସ୍ଥ ପାଞ୍ଚଗୋଟି ଜିଲ୍ଲା ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି ବୌଦ ଫୁଲବାଣୀ ଓ କୋରାପୁଟର ଉତ୍ତର ଅଞ୍ଚଳ ତଥା ମଧ୍ୟ ପ୍ରଦେଶର ବସ୍ତର ଜିଲ୍ଲାର ଉତ୍ତରୀ ଅଞ୍ଚଳ । ପୂର୍ବପଟର ଦେଉଗ, ଫୁଲଝର, ରାୟଗଡ଼, ସାରଙ୍ଗଗଡ଼ଠାରୁ ଯସିପୁର ପର୍ଯ୍ୟନ୍ତ ଅଞ୍ଚଳମାନଙ୍କର ସମଷ୍ଟି ଅଟେ । ଏହି ବ୍ୟାପକ ଅଞ୍ଚଳର ଜାଗାହିଁ ଯଥାର୍ଥରେ କୋଶଲୀ ଭାଷା ଅଟେ । ସେ ଏହି ଗ୍ରନ୍ଥରେ ପ୍ରମାଣିତ କରିଛନ୍ତି ଯେ କୋଶଳ ଦେଶର ଏକ ପ୍ରମୁଖ ଅଞ୍ଚଳ ଦକ୍ଷିଣ-କୋଶଳ ସମଗ୍ର ବିଶ୍ୱକୁ ଆପଣାର ଧାର୍ମିକ, ସାଂସ୍କୃତିକ ଓ ହୀରକ ଅବଦାନଦ୍ୱାରା ଅନୁଗୃହୀତ କରିଥିଲା । ବୌଦ୍ଧଧର୍ମର ଅବକ୍ଷୟ ସମୟରେ ସମଗ୍ର ଭାରତରେ ସୃଷ୍ଟି ହୋଇଥିବା କେତେକ ନୂତନ ଧର୍ମଧାରା ମୁଖ୍ୟତଃ ଏହି କୋଶଳ ଦେଶରୁ ହିଁ ଆରମ୍ଭ ହୋଇଥିଲା । ବଜ୍ରଯାନ, ସହଜଯାନ, କାଳଚକ୍ରଯାନ, ତନ୍ତ୍ରଯାନ, ସମ୍ବର ତନ୍ତ୍ର, ଶୈବ, ଶାକ୍ତ, ଭୈରବ, ନାଥ, ମହିମା, ଏବଂ ବୈଷ୍ଣବ ଧର୍ମଧାରା ଏହି ଅଞ୍ଚଳରୁ ମୁଖ୍ୟତଃ ଉଦ୍ଭୂତ ହୋଇଥିଲା । ବିଭିନ୍ନ ଲୋକଗୀତ ତଥା ପ୍ରାଚୀନ ଐତିହାସିକ ପ୍ରମାଣରୁ ପ୍ରୟାଗଦତ୍ତ ସ୍ପଷ୍ଟ କରିଛନ୍ତି ଯେ ଅତୀତରେ କୋଶଳ ଦେଶ ଏକ ସମ୍ଭ୍ରାନ୍ତ ଅଞ୍ଚଳ ଥିଲା ଏବଂ ଏହାର କଳା ତଥା ସଂସ୍କୃତି ସମଗ୍ର ବିଶ୍ୱରେ ପ୍ରଭାବ ବିସ୍ତାର କରିଥିଲା ।

ପ୍ରୟାଗଦତ୍ତ କୋଶଳ ପ୍ରଦେଶର ବିଶେଷ କରି ଖଡ଼ିଆଳର ଭାଷା ଓ ଶବ୍ଦ ସମ୍ଭାର ଉପରେ ଗବେଷଣା କରି କୋଶଲୀ ଭାଷାର ସ୍ୱାଧୀନ ସ୍ଥିତି ସମ୍ପର୍କରେ ବିଭିନ୍ନ ଗ୍ରନ୍ଥ ତଥା ସ୍ୱତନ୍ତ୍ର ପ୍ରବନ୍ଧମାନଙ୍କରେ ସ୍ପଷ୍ଟ ଯୁକ୍ତି ଉପସ୍ଥାପନ କରିଛନ୍ତି । ତାଙ୍କ ପ୍ରବନ୍ଧାବଳୀ ତାଙ୍କର ଉନ୍ନତ ଜ୍ଞାନ

ତଥା ଗଭୀର ଅଧ୍ୟୟନର ସୂଚନା ଦିଏ । କୋଶଲୀ ଭାଷା ଓ ସ୍ୱତନ୍ତ୍ର କୋଶଳ ଦେଶ ଉପରେ ତାଙ୍କର ପ୍ରବନ୍ଧ ତଥା ଗ୍ରନ୍ଥସମୂହ ଓଡ଼ିଶାର ବିଦଗ୍ଧ ବିଦ୍ୱାନଙ୍କ ଦୃଷ୍ଟି ଆକର୍ଷଣ କରିଛି ।

କୋଶଳ ଭାଷା ସମ୍ପର୍କିତ ପ୍ରବନ୍ଧମାନଙ୍କ ମଧ୍ୟରେ 'ଖଡ଼ିଆଲ ଅଞ୍ଚଳର ଲୋକଭାଷା' (ସପ୍ତର୍ଷି ଜୁନ ୮୧), 'ଉପଭାଷା ନୁହେଁ' (ଦୈନିକ କୋଶଳ ୧୭।୧୦।୮୧), କୋଶଲୀ ଭାଷା (ଅଗ୍ନିଶିଖା, ସମ୍ବଲପୁର ୮।୧୧।୮୧), କୋଶଲୀ ଭାଷା (ଗିରିଝର : ନଭେମ୍ବର ୮୧), 'ଅବହେଳିତ ଭାଷା' (ଦୈନିକ କୋଶଳ ୧୫।୧୨।୮୪), କୋଶଲୀ ଭାଷା (ଦୈନିକ କୋଶଳ ୨୬।୧।୮୨), କୋଶଲୀ ଭାଷା (ଉଦ୍‌ବୋଧ ୨୧ ଜୁନ ୮୨), କୋଶଲୀ ଭାଷା (ସପ୍ତର୍ଷି ନଭେମ୍ବର ୮୨), ସ୍ୱତନ୍ତ୍ର କୋଶଲୀ ଭାଷା (ହୀରାଖଣ୍ଡ ୧୮।୨।୮୩) ସ୍ୱତନ୍ତ୍ର କୋଶଲୀ ଭାଷା : ଇ: ବୋ: ଆଡ଼େ (ଗିରିଝର : ୧୪।୧୧।୮୩), ସ୍ୱତନ୍ତ୍ର କୋଶଲୀ ଭାଷା (ସପ୍ତର୍ଷି ନଭେମ୍ବର ୮୩), ସ୍ୱତନ୍ତ୍ର କୋଶଲୀ ଭାଷା (ସପ୍ତର୍ଷି ସେପ୍‌ଟେମ୍ବର ୮୩), କୋଶଲୀ ଭାଷାରେ ଘର ସମ୍ପର୍କୀୟ ଶବ୍ଦାବଳୀ (ଗିରିଝର, ନଭେମ୍ବର ୮୪), ପଶ୍ଚିମ ଓଡ଼ିଶାର ଭାଷା କୋଶଲୀ (ହୀରାଖଣ୍ଡ ଜାନୁୟାରି ୮୫), ଆଜି ଓ କାଲିର ଓଡ଼ିଆ ଭାଷା (ହୀରାଖଣ୍ଡ ୧।୨।୮୫), ସ୍ୱତନ୍ତ୍ର କୋଶଲୀ ଭାଷା (ବିଶ୍ୱଭାରତୀ ପତ୍ରିକା ଜୁନ ୮୫); କୋଶଲୀ ଲୋକସାହିତ୍ୟରେ ଗୀତତତ୍ତ୍ୱ (ପଞ୍ଚାୟତ କଲେଜ ବରଗଡ଼ ପୁଷ୍ପାଞ୍ଜଳୀସ୍ଥ ଗୀତ ସାହିତ୍ୟ ସ୍ମରଣିକାରେ ପ୍ରକାଶିତ ନଭେମ୍ବର ୮୫) । କୋଶଲ ପ୍ରଦେଶର ମୈତ୍ରୀ ବନ୍ଧନ (ଓଡ଼ିଶା ସାଂସ୍କୃତିକ ସମାଜ ଜୟନ୍ତୀ ସମାରୋହ ସ୍ମରଣିକା ମାର୍ଚ୍ଚ ୮୬) ସ୍ୱତନ୍ତ୍ର କୌଶଲୀ ଭାଷା ଧୂଆଁ ଆରୁଆଁକା (ସପ୍ତର୍ଷି ଜୁଲାଇ ୮୬), ସ୍ୱତନ୍ତ୍ର କୋଶଲୀ ଭାଷା ବିଦ୍ୱଦ୍‌ବିମୋହ (ସପ୍ତର୍ଷି ଜୁଲାଇ ୮୬), ସ୍ୱତନ୍ତ୍ର କୋଶଲୀ ଭାଷା ସଂକ୍ଷିପ୍ତ ପରିଚୟ (ସପ୍ତର୍ଷି ମାର୍ଚ୍ଚ ୮୮), ଖଡ଼ିଆଲର ଭାଷା, ସ୍ୱତନ୍ତ୍ର କୋଶଲୀ ଭାଷା ବ୍ୟାକରଣ ବିଗ୍ରହ ଓ କୋଶଲୀ ଭାଷା ନା ଉପଭାଷା ଆଦି ଅନ୍ୟତମ । ତାଙ୍କର 'କୋଶଲୀ ଭାଷାର ସଂକ୍ଷିପ୍ତ ପରିଚୟ' ପୁସ୍ତକ ଟିଟିଲାଗଡ଼ର 'କୋଶଲ ସାହିତ୍ୟ ଏକାଡେମୀ' ତରଫରୁ ପ୍ରକାଶିତ ହୋଇଛି । ଏତଦ୍‌ବ୍ୟତୀତ ସେ ଅନେକ ଅନ୍ୟ ବିଷୟକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି । ଆୟୁର୍ବେଦ

ବିଷୟକ ତାଙ୍କ ଟୀକା ଗ୍ରନ୍ଥମାନ ହେଉଛି ନାଡ଼ୀ ବିଜ୍ଞାନ (୧୯୩୬), ରସେନ୍ଦ୍ର ସାର ସଂଗ୍ରହ (୧୯୩୮), ଶାର୍ଙ୍ଗଧର ସଂହିତା (୧୯୪୨) ଓ ବୈଦ୍ୟକ ପରିଭାଷା ପ୍ରଦୀପ (୧୯୪୫) । ଏହି ଗୁଡ଼ିକ ଚୌଖମ୍ବା ପ୍ରକାଶନ ଦ୍ୱାରା ପ୍ରକାଶିତ ହୋଇଥିଲା । ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ ଏକ ଆୟୁର୍ବେଦ ଗ୍ରନ୍ଥ 'ନାଡ଼ୀ ବିଜ୍ଞାନ ଏକ ପର୍ଯ୍ୟାଲୋଚନା' ୧୯୮୨ ମସିହା ଡିସେମ୍ବର ମାସରେ ଆଳିଗଡ଼ର ଧନ୍ୱନ୍ତରୀ ପ୍ରକାଶନ ସଂସ୍ଥା ତରଫରୁ ପ୍ରକାଶିତ ହୋଇଥିଲା ।

ଖଡ଼ିଆଳ ସମ୍ପର୍କିତ ତାଙ୍କ ପ୍ରବନ୍ଧମାନଙ୍କ ମଧ୍ୟରେ ଉତ୍କଳ ସାହିତ୍ୟକୁ ଖଡ଼ିଆଳର ଅବଦାନ (ଆସନ୍ତାକାଲି, ଫେବୃୟାରୀ ୭୮), ଖଡ଼ିଆଳ ରଙ୍ଗମଞ୍ଚ ବିକାଶ ଥିଏଟର (ଆସନ୍ତାକାଲି ଏପ୍ରିଲ ୭୯), ଖଡ଼ିଆଳ ରାଜା ବୀର ବିକ୍ରମଦେବ ଓ ତାଙ୍କ ସାହିତ୍ୟିକ ଅବଦାନ (ମାନସ, ନଭେମ୍ବର ୮୦), ଓଡ଼ିଶାର ସୀମାନ୍ତ ଅଞ୍ଚଳର ସାହିତ୍ୟ ସାଧନାପୀଠ ଖଡ଼ିଆଳ (ଅନୁଶୀଳନ : ଏପ୍ରିଲ ଜୁନ ୮୨), ଖଡ଼ିଆଳ ଚନ୍ଦନଯାତ୍ରା (କୈବଲ୍ୟ ଜୁନ ୮୨), ଖଡ଼ିଆଳ ଅଞ୍ଚଳର ସାଧୁସନ୍ଥ (ଓଡ଼ିଶାର ସାଧୁସନ୍ଥ ୨ୟ ଭାଗ), ଖଡ଼ିଆଳ ଦରବାରରେ ସାହିତ୍ୟ ସାଧନା (ବସୁନ୍ଧରା ୧୯୮୨), ନାଟ୍ୟ ଏବଂ ମଞ୍ଚକଳାର ବିକାଶରେ ଖଡ଼ିଆଳର ଭୂମିକା (ଖଡ଼ିଆଳ ସାହିତ୍ୟ ସମିତି ଶତବାର୍ଷିକ ସ୍ମରଣିକା ଡିସେମ୍ବର ୮୩), କଳାହାଣ୍ଡି ଜିଲ୍ଲା ଖଡ଼ିଆଳ ଅଞ୍ଚଳର କିମ୍ବଦନ୍ତୀ ପ୍ରସଙ୍ଗ (କଳାହାଣ୍ଡି ଉତ୍ସବ ସ୍ମରଣିକା, ୧୯୯୧) । ଏତଦ୍‌ବ୍ୟତୀତ ଅନ୍ୟ ପ୍ରବନ୍ଧମାନଙ୍କ ମଧ୍ୟରେ ତପସ୍ୱିନୀରେ ମେହେର କବିଙ୍କ ଋତୁବର୍ଣ୍ଣନର ସମୀଚୀନତା (ସପ୍ତର୍ଷି, ଅଗଷ୍ଟ ୮୦), କବିବର ମେହେରଙ୍କ ସ୍ୱଭାଷାପ୍ରିୟତା (ଦୈନିକ ହୀରାଖଣ୍ଡ, ୧୧ । ୮ । ୮୩), ଭକ୍ତକବି ଚୈତନ୍ୟ ଦାସଙ୍କ ସ୍ଥାନ ଓ କାଳ (ଆସନ୍ତାକାଲି, ଏପ୍ରିଲ ୮୧), ସମଲେଶ୍ୱରୀ (ଆସନ୍ତାକାଲି ମାର୍ଚ୍ଚ ଏପ୍ରିଲ ୮୨), ମା' ସମଲେଶ୍ୱରୀ (ଦୈନିକ ହୀରାଖଣ୍ଡ, ୯ । ୪ । ୮୩ ଓ ୧୧ । ୪ । ୮୩ ), ରାମଲୀଳା ଓ ସମାଜ ଉପରେ ତାର ପ୍ରଭାବ (ଦୈନିକ ହୀରାଖଣ୍ଡ, ରାମ ନବମୀ ଅଙ୍କ, ୮୩), ରାଜା ବୀର ବିକ୍ରମଙ୍କ ନାଟ୍ୟ ଆନ୍ଦୋଳନ ଓ ନୂଆଖାଇ ଏକ ପ୍ରସ୍ତାବ (ଦୈନିକ ହୀରାଖଣ୍ଡ ୪ । ୯ । ୮୪) ଆଦି ଉଲ୍ଲେଖଯୋଗ୍ୟ ।

ପ୍ରୟାଗଦତ୍ତ ମୁଖ୍ୟତଃ ଜଣେ ପ୍ରାବନ୍ଧିକ । କୋଶଲୀ ଭାଷା ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ନିବିଡ଼ । ଏହାର ବ୍ୟାକରଣ ସମ୍ବନ୍ଧରେ ସେ ଦୀର୍ଘକାଳ ଗବେଷଣା କରି ଆସିଛନ୍ତି । ଆଜି ଯଦି କୋଶଲୀ ଭାଷାର କିଛି ବିକାଶ ହୋଇଥାଏ; ତେବେ ଏହାର ସମସ୍ତ ଶ୍ରେୟହିଁ ପଣ୍ଡିତ ପ୍ରୟାଗଦତ୍ତ ଯୋଶୀ ପ୍ରାପ୍ତ ହେବେ । ଆଜୀବନ ସେ ଏହି ଭାଷା ସାହିତ୍ୟର ବିକାଶ ପାଇଁ ସଂଗ୍ରାମ କରି ଆସିଛନ୍ତି ଓ ଏ କ୍ଷେତ୍ରରେ ଅଧିକ ବିଧିବଦ୍ଧ ଗବେଷଣା ପାଇଁ ଯୁବ ପ୍ରତିଭାମାନଙ୍କୁ ପ୍ରୋତ୍ସାହନ ଦେଇ ଆସିଛନ୍ତି । ବିଭିନ୍ନ ସାରସ୍ୱତ ସମାରୋହରେ ସେ କୋଶଲୀ ଭାଷା ସାହିତ୍ୟର ପ୍ରାଚୀନତା, ତାର ଐତିହ୍ୟ ସମ୍ପର୍କରେ ସପ୍ରମାଣ ଯୁକ୍ତିମାନ ଉପସ୍ଥାପନ କରି ଆସିଛନ୍ତି । ଓଡ଼ିଶାର ଏହି ବରପୁତ୍ର ସ୍ୱୀୟ ସାଧନା ପାଇଁ ସମଗ୍ର ଉତ୍କଳୀୟ ଜନମାନସରେ ଶ୍ରଦ୍ଧା ପ୍ରଣତି ଓ ସ୍ନେହର ଆସନରେ ଚିରଦିନ ଅଧିଷ୍ଠିତ ହୋଇ ରହିବେ ।



ଚଳଚ୍ଚିତ୍ର ଅଭିନେତା—

# ଶରତଚନ୍ଦ୍ର ପୂଜାରୀ

**ଡଃ ଶ୍ରୀଚରଣ ଦାସ**

ସାଂପ୍ରତିକ ଯୁଗ ହେଉଛି ଚଳଚ୍ଚିତ୍ରର ଯୁଗ । ପ୍ରତ୍ୟେକ ମଣିଷର ଚଳଚ୍ଚିତ୍ର ଦେଖିବାରେ ପ୍ରବଳ ଆଗ୍ରହ । ସେଥିପାଇଁ ଦେଶରେ ସିନେମା ହଲର ସଂଖ୍ୟା ଯେତିକି ବଢି ଚାଲିଛି ଦୂରଦର୍ଶନର ପ୍ରାଧାନ୍ୟ ମଧ୍ୟ ସେତିକି ଅଗ୍ରଗତି କରୁଛି । ଭାରତର ଅନ୍ୟାନ୍ୟ ପ୍ରଦେଶ ତଥା ଭାଷା ଭାଷୀର ଚଳଚ୍ଚିତ୍ର ତୁଳନାରେ ଓଡ଼ିଆ ଚଳଚ୍ଚିତ୍ର ବର୍ତ୍ତମାନ କୌଣସି ଗୁଣରେ ନ୍ୟୂନ ନୁହେଁ । ଅତୀତରେ ଏହା ବେଶ ପଛରେ ପଡ଼ିଥିଲେହେଁ ଅଧୁନା ଏହା ହିନ୍ଦୀ ବଙ୍ଗଳା ପ୍ରଭୃତି ଚଳଚ୍ଚିତ୍ରମାନଙ୍କ ସହିତ ସମତାଳରେ ଗତିଶୀଳ । ଏହି ଅଗ୍ରଗତିର ମୂଳରେ ନିର୍ଦ୍ଦେଶକ ତଥା ଅଭିନେତା ଅଭିନେତ୍ରୀମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଶରତଚନ୍ଦ୍ର ପୂଜାରୀ ଓଡ଼ିଆ ଚଳଚ୍ଚିତ୍ର ଜଗତର ଏକ ଝଲକ । ଜଣେ ଦକ୍ଷ ଅଭିନେତା ଭାବରେ ସେ ଓଡ଼ିଆ ଚଳଚ୍ଚିତ୍ରରେ ବେଶ୍ ଲୋକପ୍ରିୟ । ୧୯୩୪ ମସିହା ଅଗଷ୍ଟ ମାସ ୮ ତାରିଖରେ ପୁରୀ ଜିଲ୍ଲାର ନୟାଗଡ଼ରେ ସେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ଏଠାରେ ସେ ସ୍ଥାୟୀ ଭାବରେ ରହି ପାରିଲେ ନାହିଁ । ତାଙ୍କର ପିତା ସମ୍ବଲପୁରରେ ଚାକିରି କରୁଥିବାରୁ ସେଠାରେ ସେ ଖାଡ଼ୁଆପଡ଼ା ନିକଟସ୍ଥ 'କମଳା ନିବାସ'ରେ ସ୍ଥାୟୀ ଅଧିବାସୀ ଭାବରେ ଅବସ୍ଥାନ କଲେ । ପିଲାବୟସରୁ ସେ ଥିଲେ ମେଧାବୀ । ତାଙ୍କର ଅଭିନେତା ହେବାର କଳା ଖୁବ୍ କମ୍ ବୟସରୁ ଜଣା ପଡ଼ୁଥିଲା ।

ଶରତବାବୁ ୧୯୪୯ ମସିହାରେ ସମ୍ବଲପୁର ଜିଲ୍ଲାର ଲରମ୍ଭା ଆବାସିକ ଉଚ୍ଚମାଧ୍ୟମିକ ବିଦ୍ୟାଳୟରୁ ମାଟ୍ରିକ ପାଶ୍ କଲେ । ସେ ଏକ ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇଥିବାରୁ ଅଧିକ ଅଧ୍ୟୟନ କରିବାର ସୁଯୋଗରୁ ବଞ୍ଚିତ ହୋଇ ନଥିଲେ । ଭାଗ୍ୟ ମଧ୍ୟ ତାଙ୍କ ପାଇଁ ଅନୁକୂଳ ଥିଲା । ତେଣୁ ସେ ୧୯୫୨ ମସିହାରେ ସମ୍ବଲପୁରର ଗଙ୍ଗାଧର ମେହେର କଲେଜରୁ ଆଇ·ଏସ·ସି ପାଶ୍ କଲେ । ୧୯୫୪ ମସିହାରେ ରେଭେନ୍ସା କଲେଜରୁ ବି: ଏ: ପାଶ୍ କରି ଶ୍ରୀ ପୂଜାରୀ ଏମ: ଏ: ପଢ଼ିବା ପାଇଁ ପ୍ରୟାଗ ଯାଇଥିଲେ ଏବଂ ସେ ୧୯୫୬ ମସିହାରେ ପ୍ରୟାଗ ବିଶ୍ୱ-ବିଦ୍ୟାଳୟରୁ ଅର୍ଥନୀତିରେ ଏମ: ଏ: ପାଶ୍ କଲେ । ସେଠାରେ କଳାପ୍ରତି ତାଙ୍କର ପ୍ରଗାଢ଼ ଆଗ୍ରହ ସୃଷ୍ଟି ହୋଇଥିଲା । ତେଣୁ ସେ ଡ୍ରପ୍-ଇନ୍-ପେଣ୍ଟିଂ କଲେ । ଏହା ଥିଲା ତାଙ୍କର ଆନୁଷ୍ଠାନିକ ଶିକ୍ଷା ।

ତାପରେ ଆରମ୍ଭ ହେଲା ଶ୍ରୀ ପୂଜାରୀଙ୍କର କର୍ମମୟ ଜୀବନ । ପ୍ରଥମେ ସେ ହେଲେ ପ୍ରେସର ବ୍ଲକ ଡିଜାଇନର । ପରେ ସମ୍ବାଦପତ୍ରର ପ୍ରଚାର ପାଇଁ ସେ କମିସନ ଏଜେଣ୍ଟ ରୂପେ କାର୍ଯ୍ୟ କଲେ । ମାତ୍ର ଅଳ୍ପଦିନ ପାଇଁ ପୂଜାରୀ ଓଡ଼ିଶା ସେକ୍ରେଟାରୀଏଟ୍‌ର ପରିସଂଖ୍ୟାନ ଓ ଅର୍ଥନୀତି ବିଭାଗର ଅଫିସ ଆସିଷ୍ଟାଣ୍ଟ ରୂପେ କାର୍ଯ୍ୟ କରିଥିଲେ କିନ୍ତୁ ଏହା ତାଙ୍କୁ ଆତ୍ମସନ୍ତୋଷ ପ୍ରଦାନ କରିପାରି ନଥିଲା । ଶିକ୍ଷା ବିଭାଗରେ ଅଧ୍ୟାପନା କରିବା ପାଇଁ ତାଙ୍କର ପିଲାଦିନରୁ ଲକ୍ଷ୍ୟ ଥିଲା । ଏଣେ ଜଣେ ଅଭିନେତା ହେବାର ଆଗ୍ରହକୁ ମଧ୍ୟ ସେ ଚାପି ରଖିପାରି ନଥିଲେ । ପ୍ରଥମଥର ପାଇଁ ୧୯୫୮ ମସିହାରେ ତାଙ୍କର ଚଳଚ୍ଚିତ୍ର ଜଗତକୁ ଶୁଭାଗମନ ହୋଇଥିଲା ଏବଂ ସେ ମହାଲକ୍ଷ୍ମୀ ପୂଜା ଚଳଚ୍ଚିତ୍ରରେ ଅଭିନୟ କଲେ ।

ଅଧ୍ୟାପନାକୁ ପ୍ରାଧାନ୍ୟ ଦେବାକୁ ଇଚ୍ଛାକରି ଶ୍ରୀ ପୂଜାରୀ ୧୯୬୦ ମସିହା ଜୁଲାଇ ମାସରେ ବରଗଡ଼ ପଞ୍ଚାୟତ କଲେଜର ଅର୍ଥନୀତି ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ଖୁବ୍ କମ୍ ଦିନ ମଧ୍ୟରେ କଲେଜରେ ଖ୍ୟାତି ଅର୍ଜନ କଲେ ସତ କିନ୍ତୁ ଏହି ଖ୍ୟାତିଯୋଗୁଁ ସେ ୧୯୬୩ ମସିହାରେ ସେହି ବେସରକାରୀ ମହାବିଦ୍ୟାଳୟର ଭାରପ୍ରାପ୍ତ ଅଧ୍ୟକ୍ଷ ଭାବରେ କାର୍ଯ୍ୟ

କଲେ । ଅଧ୍ୟକ୍ଷ ପଦବୀ ଏବଂ ବେସରକାରୀ କଲେଜର ବୃଟିପୂର୍ଣ୍ଣ ପରିଚାଳନା ତାଙ୍କ ପାଇଁ ଅସହ୍ୟ ହୋଇପଡ଼ିବାରୁ ସେ ୧୯୬୬ ମସିହାରେ ବରଗଡ଼ ପଞ୍ଚାୟତ କଲେଜ ଚାକିରିରୁ ଇସ୍ତଫା ପ୍ରଦାନ କଲେ ।

ଶରତବାବୁଙ୍କୁ କୌଣସି ଚାକିରିର ପ୍ରଲୋଭନ ଅଧିକକାଳ ପର୍ଯ୍ୟନ୍ତ ବାନ୍ଧି ରଖିପାରୁ ନ ଥିଲା । ଫଳରେ ଅନେକ ଚାକିରି ପାଇ ପ୍ରତ୍ୟାଖ୍ୟାନ କରିଛନ୍ତି ଏବଂ ଆହୁରି କେତେକ ଚାକିରିରୁ ମନ ନ ମାନିବାରୁ ଯୋଗଦେଇ କିଛିଦିନ ପରେ ଇସ୍ତଫା ଦେଇଛନ୍ତି । ୧୯୬୬ ମସିହାରେ ସେ ଖୋର୍ଦ୍ଧାର ନରଶିଂଗଡ଼ସ୍ଥିତ ତାପଙ୍ଗ ଲାଇଟ୍ ଫାଉଣ୍ଡ୍ରୀର ଓ୍ୱାର୍କସ୍ ମ୍ୟାନେଜର ଭାବରେ ନିଯୁକ୍ତ ପାଇଲେ । ମାତ୍ର ଏହା ତାଙ୍କୁ ଶାନ୍ତି ଦେଇ ପାରିଲା ନାହିଁ । ତେଣୁ ମାତ୍ର ପାଞ୍ଚମାସ ସେ ଏଥିରେ କାର୍ଯ୍ୟକରି ସେଥିରୁ ଇସ୍ତଫା ଦେଲେ । ୧୯୬୬ ମସିହା ଠାରୁ ୧୯୬୮ ମସିହା ପର୍ଯ୍ୟନ୍ତ ଦୀର୍ଘ ଦୁଇବର୍ଷ କାଳ ନିରବଚ୍ଛିନ୍ନ ଭାବରେ ସେ ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିବା ସଙ୍ଗେ ସଙ୍ଗେ ଚଳଚ୍ଚିତ୍ର ସମ୍ବନ୍ଧରେ ବୈଷୟିକ ଜ୍ଞାନ ଆହରଣ କରିଥିଲେ । ଚଳଚ୍ଚିତ୍ରରେ ଅଭିନୟ କରିଥିଲେ ମଧ୍ୟ କଲେଜ ଚାକିରିରୁ ତାଙ୍କର ମୋହ କମି ନଥିଲା । କଲେଜ ଅଧ୍ୟାପକର ସମ୍ମାନ ଏବଂ ତତ୍କାଳୀନ ଶିକ୍ଷା ବିଭାଗର ପବିତ୍ର ପରମ୍ପରା ଦ୍ୱାରା ସେ ବିଶେଷ ଆକର୍ଷିତ ହୋଇ ପଡ଼ିଥିଲେ । ତେଣୁ ଶ୍ରୀ ପୂଜାରୀ ୧୯୬୮ ମସିହାରେ ଲାରମ୍ଭା ଇଣ୍ଟରମିଡ଼ିଏଟ୍ ବିଜ୍ଞାନ କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଲେ ।

ଶରତ ପୂଜାରୀଙ୍କ ହାତରେ ଲାରମ୍ଭା କଲେଜର ଭାଗ୍ୟ ଓ ଭବିଷ୍ୟତ ନିର୍ଭର କଲା । ୧୯୭୧ ମସିହାରେ ଲାରମ୍ଭା ମହାବିଦ୍ୟାଳୟ ଡିଗ୍ରୀ କଲେଜ ଭାବରେ ସରକାରଙ୍କ ଦ୍ୱାରା ଅନୁମୋଦିତ ହେଲା । ପୂଜାରୀଙ୍କର ନିଷ୍ଠା, ଆନ୍ତରିକତା ଏବଂ ଅକୁଣ୍ଠ ସହଯୋଗରେ ଏହି କଲେଜ ସରକାରୀ ସାହାଯ୍ୟ ପାଇଲା । ଶରତ୍‌ବାବୁ ଏକ ସଙ୍ଗେ ଏହାର ସମ୍ପାଦକ ଏବଂ ଅଧ୍ୟକ୍ଷ ଭାବରେ ବିଧିବଦ୍ଧ ଅବସ୍ଥାପିତ ହେଲେ । ଏହାର ଅଧ୍ୟକ୍ଷରୂପେ ସେ ପାଠ୍ୟକ୍ରମ, ଅଧ୍ୟାପନାରେ ଶୃଙ୍ଖଳା, ମହା-ବିଦ୍ୟାଳୟର ପାଣ୍ଠି ସଂଗ୍ରହ ତଥା ମହାବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି

ତାଙ୍କ ମନପ୍ରାଣ ଢାଳି ଦେଇଥିଲେ । ୧୯୯୨ ମସିହାରେ ମହାବିଦ୍ୟାଳୟର ରୌପ୍ୟ ଜୟନ୍ତୀ ପାଳନ ପରେ ବିଶ୍ୱବିଦ୍ୟାଳୟ ଅନୁଦାନ ନିଗମ ଓ ଓଡ଼ିଶା ସରକାରଙ୍କ ଦ୍ୱାରା ଲରମ୍ଭା ମହାବିଦ୍ୟାଳୟକୁ 'ଅଟୋନମସ୍' ପାହ୍ୟାକୁ ଉନ୍ନୀତ କରିବାର ଅନୁମୋଦନ ପ୍ରାପ୍ତ ହେଲା । ପୂଜାରୀଙ୍କର ବ୍ୟକ୍ତିତ୍ୱ ଓ ପ୍ରତିଷ୍ଠାର ଭୂୟୋବିକାଶ ଘଟିଲା । ତାଙ୍କ ଭିତରେ ଥିବା ପ୍ରତିଭାର ସୁରଭି ଅନ୍ୟମାନଙ୍କୁ ଆକର୍ଷିତ କଲା । ସେ ୧୯୮୯ ମସିହା ମଇ ମାସରୁ ୧୯୯୦ ମସିହା ଜାନୁୟାରୀ ମାସ ପର୍ଯ୍ୟନ୍ତ ସୁନ୍ଦରଗଡ଼ସ୍ଥିତ 'ବିମ୍ବାଧର ଇନଷ୍ଟିଚ୍ୟୁଟ ଅଫ୍ ଭିଜୁଏଲ ଓ ପରଫର୍ମିଂ ଆର୍ଟସ୍'ର ପ୍ରଥମ ଅଧ୍ୟକ୍ଷ ଭାବରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଡେପୁଟେସନରେ ଅବସ୍ଥାପିତ ହେଲେ । ୧୯୯୨ ମସିହା ଅଗଷ୍ଟ ମାସ ୭ ତାରିଖରେ ସରକାର ପୁଣି ତାଙ୍କୁ ଭୁବନେଶ୍ୱରର ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବରେ ଡେପୁଟେସନରେ ନିଯୁକ୍ତ ଦେଲେ ଏବଂ ଅଦ୍ୟାବଧି ଶ୍ରୀ ପୂଜାରୀ ସେଠାରେ କାର୍ଯ୍ୟରତ ଅଛନ୍ତି ।

## ବିଶେଷ ଅଭିଜ୍ଞତା :

ଶ୍ରୀ ପୂଜାରୀ ବାସ୍ତବିକ ହେଉଛନ୍ତି ଓଡ଼ିଆ ଜାତିର ଗର୍ବ ଓ ଗୌରବ । ଏକାଧାରରେ ଜଣେ କଳାକାର, ନିର୍ଦ୍ଦେଶକ, ଶିକ୍ଷାବିତ୍ ଏବଂ ଅଧ୍ୟକ୍ଷ ଭାବରେ ସେ ସ୍ୱନାମଧନ୍ୟ । ଓଡ଼ିଶାର ସଙ୍ଗୀତ, ନୃତ୍ୟ ଓ ଲଳିତ କଳା ପ୍ରତି ତାଙ୍କର ଗଭୀର ଆକର୍ଷଣ । ଛାତ୍ର ଜୀବନରୁ ଓଡ଼ିଆ ସାହିତ୍ୟ ଓ ସଙ୍ଗୀତକୁ ସେ ଭଲ ପାଇଛନ୍ତି । ସ୍କୁଲରେ ଚିତ୍ରକଳା ଓ ଅଭିନୟରେ ସେ ବେଶ୍ ସୁନାମ ଅର୍ଜନ କରିଥିଲେ । ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ପୂଜାରୀ ଚିତ୍ରକଳା ନାଟକ ଓ ସାହିତ୍ୟରେ ଦକ୍ଷତା ପ୍ରଦର୍ଶନ କରିଥିଲେ । ଏହା ସହିତ କ୍ରୀଡ଼ା ପ୍ରତି ମଧ୍ୟ ତାଙ୍କର ପ୍ରବଳ ଅନୁରାଗ ଥିଲା । ଫୁଟବଲ ଓ ଟେନିସ ଥିଲା ତାଙ୍କର ଅତ୍ୟନ୍ତ ପ୍ରିୟ ଖେଳ । ମହାବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟରେ ମଧ୍ୟ ସେ ଏନ୍. ସି. ସି.ରେ ଅଂଶଗ୍ରହଣ କରି ଭାରତର ବିଭିନ୍ନ ସ୍ଥାନକୁ ଯାଇଥିଲେ । କିନ୍ତୁ ଶିକ୍ଷକ ଜୀବନରେ ଚଳଚ୍ଚିତ୍ର ଥିଲା ତାଙ୍କର ପ୍ରଧାନ ନିଶା । ଶିକ୍ଷକୀ ଜୀବନରେ ଯେତିକି ସମୟ ଯେ ଅବସର ପାଉଥିଲେ ସେ ସମୟକୁ ଚଳଚ୍ଚିତ୍ରରେ ଅଭିନୟ କରିବା ଓ ନିର୍ଦ୍ଦେଶନା ଦେବା ପ୍ରଭୃତି କାର୍ଯ୍ୟକୁ ସେ ଅଗ୍ରାଧିକାର ଦେଉଥିଲେ ।

ଶ୍ରୀ ପୂଜାରୀ ୧୯୫୮ ମସିହାଠାରୁ ଓଡ଼ିଆ ଚଳଚ୍ଚିତ୍ର ସହିତ ସଂଯୁକ୍ତ । ସେତେବେଳେ ଓଡ଼ିଆ ଚଳଚ୍ଚିତ୍ର ସେତେ ଅଗ୍ରଗତି କରି ନଥାଏ । କିନ୍ତୁ ଜଣେ ଶିକ୍ଷିତ ଅଭିନେତାଙ୍କୁ ପାଇ ଓଡ଼ିଆ ଚଳଚ୍ଚିତ୍ରଜଗତ ନିଜକୁ ଧନ୍ୟ ମନେ କରିଥିବ ନିଶ୍ଚୟ ।

ଶ୍ରୀ ପୂଜାରୀଙ୍କର ନିର୍ଦ୍ଦେଶନାର ଦିଗ ଅତ୍ୟନ୍ତ ଲୋକପ୍ରିୟ । ବିଗତ ୩୫ ବର୍ଷ ମଧ୍ୟରେ ସେ ସୌଖୀନ ରଙ୍ଗମଞ୍ଚରେ ପ୍ରାୟ ୭୫ରୁ ଊର୍ଦ୍ଧ୍ୱ ନାଟକର ନିର୍ଦ୍ଦେଶକ ଭାବରେ ପରିଚିତ । ଚଳଚ୍ଚିତ୍ର ଜଗତରେ ସେ ଚିରସ୍ମରଣୀୟ । ୧୯୭୪ ମସିହାରେ ଓଡ଼ିଆ ଚଳଚ୍ଚିତ୍ର । 'ସାଧନା'ର ପ୍ରଯୋଜନା ଏବଂ ୧୯୭୫ ମସିହାଠାରୁ ୧୯୮୨ ମସିହା ମଧ୍ୟରେ ତଥପୋଇ ଅଶାନ୍ତଗ୍ରହ ଓ ଅସ୍ତରାଗ—ଏହି ତିନୋଟି ଓଡ଼ିଆ ଚଳଚ୍ଚିତ୍ରର ନିର୍ଦ୍ଦେଶନା ଦେଇଥିଲେ । ଏହା ତତ୍କାଳୀନ ସମୟରେ ବେଶ୍ ଖ୍ୟାତି ଅର୍ଜନ କରିଥିଲା । ଜଣେ ଅଭିନେତା ଭାବରେ ତାଙ୍କୁ ବା କିଏ ନ ଜାଣିଛି । ଓଡ଼ିଆ ଚଳଚ୍ଚିତ୍ର ବିଷୟରେ ଚିନ୍ତା କଲେ ଯେଉଁ କେତେ ଜଣ ଅଭିନେତାଙ୍କ କଥା ମନକୁ ଆସେ ତନ୍ମଧ୍ୟରୁ ଶ୍ରୀ ପୂଜାରୀ ଅନ୍ୟତମ । ତାଙ୍କର ଅଭିନୟ ଅସାଧାରଣ । ସେ ଠିକ ଅନୁଭବ କରିଛନ୍ତି । ଅନ୍ୟାନ୍ୟ ପ୍ରାଦେଶିକ ଚଳଚ୍ଚିତ୍ର ଦ୍ୱାରା ପ୍ରଭାବିତ ହୋଇଛନ୍ତି—ଚଳଚ୍ଚିତ୍ରର ଜଣେ ଦକ୍ଷ କଳାକାର ହେବାକୁ ହେଲେ କେଉଁ ପ୍ରଧାନ ଗୁଣାବଳୀ ଅପରିହାର୍ଯ୍ୟ । ଏହାତ ଜଣେ ସବାକ୍ କଳାକାରର ମୌଳିକ କର୍ତ୍ତବ୍ୟ । କିନ୍ତୁ ଏହାକୁ କେତେଜଣ ବା ଅନୁକରଣ କରନ୍ତି ।

ଓଡ଼ିଆ ଚଳଚ୍ଚିତ୍ର ଆଜି ଦ୍ରୁତ ଗତିରେ ଆଗେଇ ଚାଲିଛି । ଚଳଚ୍ଚିତ୍ର ସୃଷ୍ଟିଠାରୁ ଅବଧି ଯେତେ ଓଡ଼ିଆ ଚଳଚ୍ଚିତ୍ର ସୃଷ୍ଟି ହେଲାଣି ତନ୍ମଧ୍ୟରୁ ବହୁ ଚଳଚ୍ଚିତ୍ରରେ ଶ୍ରୀ ପୂଜାରୀ ଅଭିନୟ କରିଛନ୍ତି । ତାଙ୍କର ଅଭିନୟର ପରିସମାପ୍ତି ହୋଇନାହିଁ । କାରଣ ଓଡ଼ିଆ ଚଳଚ୍ଚିତ୍ର ଜଗତ ତାଙ୍କୁ ଏତେ ଶୀଘ୍ର ଅବସର ଦେବା ସପକ୍ଷରେ ନାହିଁ । ତାଙ୍କର ଅନେକ ଗୁରୁଦାୟିତ୍ୱ ଅଛି । ଚଳଚ୍ଚିତ୍ର ଜଗତ ତାଙ୍କଠାରୁ ଆହୁରି ଅନେକ ଆଶାକରେ । ଆଜି ପର୍ଯ୍ୟନ୍ତ ଶ୍ରୀ ପୂଜାରୀ ୩୫ଟି ଚଳଚ୍ଚିତ୍ରରେ ଅଭିନୟ କରିସାରିଛନ୍ତି । କୌଣସି ଚଳଚ୍ଚିତ୍ରରେ ତାଙ୍କର

ଅଭିନୟରେ ସ୍ଫୂର୍ତ୍ତି ହୋଇଥିବା ଲକ୍ଷ୍ୟ କରାଯାଇ ନାହିଁ । କଳାକୁ ବଞ୍ଚାଇ ରଖିବା ପାଇଁ ସତତ ସେପରି ତାଙ୍କର ଜୀବନ ଉତ୍ସର୍ଗୀକୃତ ।

ଶ୍ରୀ ପୂଜାରୀ ହେଉଛନ୍ତି ପଶ୍ଚିମାଞ୍ଚଳ ଓଡ଼ିଶାର ଜଣେ ବରପୁତ୍ର । ସମ୍ବଲପୁରୀ ଭାଷା, ସାହିତ୍ୟର ସମୃଦ୍ଧି ପାଇଁ ମଧ୍ୟ ତାଙ୍କର ଭୂମିକା କମ୍ ନୁହେଁ । ଏଇଥି ପାଇଁ ତାଙ୍କ ଲେଖନୀ ଧ୍ରୁବ ଚଳଚଞ୍ଚଳ । ସେ ବିଭିନ୍ନ ସମୟରେ ଓଡ଼ିଆ ଓ ସମ୍ବଲପୁରୀ ଭାଷାରେ ଗଳ୍ପ, କବିତା ଓ ସଂସ୍କୃତି ସମ୍ବନ୍ଧୀୟ ଆଲୋଚନା ତଥା ରମ୍ୟରଚନାମାନ ସୃଷ୍ଟି କରିଛନ୍ତି ଏବଂ ଏହା ମଧ୍ୟ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ସାହିତ୍ୟ ସୃଷ୍ଟି ମାଧ୍ୟମରେ ଶ୍ରୀ ପୂଜାରୀଙ୍କର ବ୍ୟକ୍ତିଗତ ରୁଚି ଓ ଚିନ୍ତାଧାରା ସ୍ପଷ୍ଟ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯାଏ । ଆକାଶବାଣୀ ସମ୍ବଲପୁରରେ ମଧ୍ୟ ତାଙ୍କର ପ୍ରଭାବ ଢେର ବେଶୀ । ଓଡ଼ିଆ ନାଟକ ଓ ଚଳଚ୍ଚିତ୍ର ଉପରେ ଓଡ଼ିଆ ଓ ଇଂରାଜୀରେ ବହୁ ଆଲୋଚନା ଓ ରମ୍ୟରଚନା ୧୯୬୧ ମସିହାରୁ ୧୯୯୨ ମସିହା ପର୍ଯ୍ୟନ୍ତ ଆକାଶବାଣୀ ସମ୍ବଲପୁରରେ ପ୍ରସାରିତ ହୋଇଛି । ଏଗୁଡ଼ିକ ସବୁ ସଙ୍କଳିତ ହୋଇ ପାରିନାହିଁ ସତ କିନ୍ତୁ ଏହାକୁ ଯଥାସମ୍ଭବ ସଙ୍କଳିତ କରିବା ପାଇଁ ଲେଖକ ଉଦ୍ୟମ କରୁଛନ୍ତି । ୧୯୮୮ ମସିହାରେ **"Oriya Films-historical Perspective and its Development"** ଶୀର୍ଷକ ଏକ ଆଲୋଚନା ଓଡ଼ିଶା ଗେଜେଟ ପାଇଁ ସେ ଲେଖିଛନ୍ତି ।

ଶ୍ରୀ ପୂଜାରୀ ହେଉଛନ୍ତି ବହୁମୁଖୀ ପ୍ରତିଭାର ଅଧିକାରୀ । ଜଣେ ସଚେତନଶୀଳ ନାଗରିକ, ଦକ୍ଷ ଅଧକ୍ଷ । ରୁଚିସମ୍ପନ୍ନ ଅଭିନେତା, ଏବଂ ସୁଲେଖକ ଭାବରେ ତାଙ୍କର ଉତ୍କୃଷ୍ଟ ପ୍ରତିଭାର ପରିଚୟ ମିଳେ । ସେଥି ସହିତ ତାଙ୍କୁ ବିଭିନ୍ନ ସମୟରେ ବହୁ ଗୁରୁଦାୟିତ୍ୱମାନ ତୁଲାଇବାକୁ ପଡ଼ିଛି । ସେଥିରେ ତାଙ୍କର ଗ୍ଲାନି ନାହିଁ, ବିରକ୍ତି ନାହିଁ, ପ୍ରତିବାଦ ନାହିଁ, ଅଛି ଅପାର ଆନନ୍ଦ । ତାହା ତ ପ୍ରକୃତ ଜୀବନ । ବ୍ୟକ୍ତିତ୍ୱର ପ୍ରକୃଷ୍ଟ ପରିମାପ । ଶରତ ବାବୁ ବହୁବର୍ଷ ଧରି ମାଧ୍ୟମିକ ଶିକ୍ଷା ପରିଷଦର ବୋର୍ଡ଼ ଅଫ ଷ୍ଟଡ଼ିଜ୍‌ର ସଭ୍ୟ ଥିଲେ । ତାଙ୍କ ଦାୟିତ୍ୱ ମଧ୍ୟରେ ପରିଷଦର ସଙ୍ଗୀତ, ନୃତ୍ୟ ଓ ଲଳିତକଳାର ପ୍ରଭୂତ ଉନ୍ନତି ସାଧିତ ହୋଇଛି । ଏତଦ୍‌ବ୍ୟତୀତ ଉଚ୍ଚମାଧ୍ୟମିକ ଶିକ୍ଷା ପରିଷଦର ଅର୍ଥନୀତି

ପାଠ୍ୟ ପରିଷଦର ସଭ୍ୟ ଓ ଏକାଡେମିକ କମିଟିର ସଭ୍ୟରୂପେ ସେ ବହୁବର୍ଷ କାର୍ଯ୍ୟ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସିନେଟ୍ ଓ ଏକାଡେମିକ୍ କାଉନସିଲର ସଭ୍ୟ, ନାଟ୍ୟକଳା ପାଠ୍ୟ ପରିଷଦ, ଅର୍ଥମିତ ପାଠ୍ୟ ପରିଷଦ ତଥା ସଙ୍ଗୀତ, ନୃତ୍ୟ ନାଟକ ପାଠ୍ୟ ପରିଷଦର ମନୋନୀତ ସଭ୍ୟ ଭାବରେ ସେ ବର୍ତ୍ତମାନ କାର୍ଯ୍ୟରତ । ଓଡ଼ିଶାର ସଙ୍ଗୀତ, ନୃତ୍ୟ ଏବଂ ନାଟକକୁ ଦେଶ ବିଦେଶରେ ଲୋକପ୍ରିୟ କରାଇବା ପାଇଁ ତାଙ୍କର ଉଦ୍ୟମ ଅପ୍ରତିହତ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମିର ମନୋନୀତ ସଭ୍ୟ ଭାବରେ ସେ ଦଶବର୍ଷ ମଧ୍ୟରେ ଦୁଇଥର ମନୋନୀତ ହୋଇଛନ୍ତି । ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ତାଙ୍କର ସକ୍ରିୟ ସହଯୋଗ ରହିଛି ।

୧୯୮୯ ମସିହାରୁ ୧୯୯୧ ମସିହା ପର୍ଯ୍ୟନ୍ତ ଓଡ଼ିଶା ଚଳଚ୍ଚିତ୍ର ଉନ୍ନୟନ ନିଗମର ନିର୍ଦ୍ଦେଶନାମଣ୍ଡଳୀ, ଉପଦେଷ୍ଟା ମଣ୍ଡଳୀ, ସ୍କ୍ରିପ୍ଟ କମିଟି ଓ କଳିଙ୍ଗ ଷ୍ଟୁଡିଓର ପରିଚାଳନା ସମିତିର ମନୋନୀତ ସଭ୍ୟ ଭାବରେ ପ୍ରାୟ ଏଗାର ବର୍ଷରୁ ଊର୍ଦ୍ଧ୍ୱକାଳ ସେ ଦାୟିତ୍ୱ ତୁଲାଇ ଅଛନ୍ତି । ଚଳଚ୍ଚିତ୍ରର ସମୃଦ୍ଧି ପାଇଁ ସେ ବହୁ ଯୋଜନା ପ୍ରସ୍ତୁତ କରି ନିର୍ଦ୍ଦେଶକ, ସରକାର ଏବଂ ଜନସାଧାରଣଙ୍କ ନିକଟରେ ଉପସ୍ଥାପନା କରିଛନ୍ତି । ୧୯୯୨ ମସିହାରେ ଓଡ଼ିଶା ସରକାରଙ୍କର ସୂଚନା ଓ ପ୍ରଚାର ବିଭାଗର ଚଳଚ୍ଚିତ୍ର ପ୍ରଯୋଜନା ଉପଦେଷ୍ଟା କମିଟିର ସଭ୍ୟରୂପେ ତାଙ୍କୁ ମନୋନୀତ କରାଯାଇଅଛି । ତାଙ୍କର ଦକ୍ଷତା ହିଁ ତାଙ୍କ ବ୍ୟକ୍ତିତ୍ୱର ସର୍ବଶ୍ରେଷ୍ଠ ପରିମାପ । ସର୍ବଭାରତୀୟ କ୍ଷେତ୍ରରେ ମଧ୍ୟ ସେ କମ୍ ନୁହନ୍ତି । ଜାତୀୟ ଚଳଚ୍ଚିତ୍ର ଉନ୍ନୟନ ନିଗମର ଓଡ଼ିଶା ପାଇଁ ମନୋନୀତ ଚିତ୍ରନାଟ୍ୟ ମନୋନୟନ ପ୍ୟାନେଲର ସଭ୍ୟରୂପେ ତାଙ୍କୁ ଗ୍ରହଣ କରାଯାଇଛି । ସଂସ୍କୃତି ବିଭାଗ ତରଫରୁ 'ଚଳଚ୍ଚିତ୍ର' ବିଚାରକ ମଣ୍ଡଳୀର ସଭ୍ୟରୂପେ ପ୍ରତିବର୍ଷ ସେ ଉଚ୍ଚ ମାନର ତଥା ଆଦର୍ଶସ୍ଥାନୀୟ ଚଳଚ୍ଚିତ୍ରକୁ ପୁରସ୍କୃତ କରିବା ପାଇଁ ମତ ଦେଇଅଛନ୍ତି ।

## ପୁରସ୍କାର ଓ ସମ୍ମାନ :

ସମ୍ମାନ ଓ ପୁରସ୍କାର କିନ୍ତୁ ଗୋଟାଏ ବଡ଼କଥା ନୁହେଁ । ସ୍ରଷ୍ଟା ପାଇଁ ସୃଷ୍ଟି ହିଁ ତାର ପ୍ରକୃତ ସମ୍ମାନ ଓ ପ୍ରକୃଷ୍ଟ ପୁରସ୍କାର ।

ଅଭିନେତା ପାଇଁ ସାର୍ଥକ ଅଭିନୟ ହେଉଛି ଶ୍ରେଷ୍ଠ ସମ୍ମାନ । ଆନୁଷ୍ଠାନିକ ପୁରସ୍କାର ଓ ସମ୍ମାନ କେବେ କାହାକୁ ଚରମ ଶାନ୍ତି ଦେଇନାହିଁ ଅଥବା ଦେବା ମଧ୍ୟ ସମ୍ଭବ ନୁହେଁ । ତଥାପି ସାମୟିକ ସମୟ ପାଇଁ ଇଏ ଗୋଟାଏ ଉତ୍ସାହ, କିମ୍ବା ପ୍ରେରଣା ମାତ୍ର । ସେଇ ଦୃଷ୍ଟିକୋଣରୁ ବିଚାର କଲେ ଶରତ ବାବୁଙ୍କ ଜୀବନରେ କମ୍ ସମ୍ମାନ ମିଳିନାହିଁ । ସୌଭାଗ୍ୟ ତାଙ୍କର ହାତ ପାଆନ୍ତାରେ । ୧୯୬୮ ମସିହାଠାରୁ ୧୯୯୨ ମସିହା ପର୍ଯ୍ୟନ୍ତ ବିଭିନ୍ନ ସରକାରୀ ଓ ବେସରକାରୀ ବିଭାଗ ସଙ୍ଗଠନ ଓ ଅନୁଷ୍ଠାନ ଦ୍ୱାରା ଅଭିନୟ ପାଇଁ ତାଙ୍କୁ ସମ୍ମାନିତ କରାଯାଇଅଛି । ସେମାନଙ୍କ ମଧ୍ୟରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଓଡ଼ିଶା ସାଂସ୍କୃତିକ ସମାଜ, ସମ୍ବଲପୁର ପ୍ରଗତି ସଂଘ, ସମ୍ବଲପୁର, ମହାବୀର ସାଂସ୍କୃତିକ ସଂଘ, ଭବାନୀପାଟଣା, ଉନ୍ମେଷ, କଟକ, ଯାଜପୁରର କଳା ନିକେତନ, ଉତ୍କଳ ବିଶ୍ୱବିଦ୍ୟାଳୟର ନାଟ୍ୟ ସଂସଦ, ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର 'ଚଳଚ୍ଚିତ୍ର' ପୁରସ୍କାର, ଜୀବନରଙ୍ଗ ପୁରସ୍କାର, କଟକ ଏବଂ ମିଳନଚକ୍ର, କଟକ ଇତ୍ୟାଦି ଉଲ୍ଲେଖଯୋଗ୍ୟ । ୧୯୮୫ ମସିହା ପାଇଁ ଓଡ଼ିଶା ସରକାରଙ୍କର ଓଡ଼ିଆ ଚଳଚ୍ଚିତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ସେ 'ଜୟଦେବ ପୁରସ୍କାର'ରେ ସମ୍ମାନିତ । ଏତଦବ୍ୟତୀତ ୧୯୯୩ ମସିହାରେ ଇମ୍‌ଫା ଟ୍ରଷ୍ଟ ତରଫରୁ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଅବଦାନ ପାଇଁ ତାଙ୍କୁ 'ଶାରଳା ପୁରସ୍କାର' ପ୍ରଦାନ କରାଯାଇଅଛି ।

ଶ୍ରୀ ପୂଜାରୀଙ୍କର ପାରିବାରିକ ଜୀବନ ଅତ୍ୟନ୍ତ ଶାନ୍ତିପୂର୍ଣ୍ଣ । ପରିବାରର ସ୍ନେହ ଶ୍ରଦ୍ଧା ଏବଂ ସହାନୁଭୂତିକୁ ପାଥେୟ କରି ତାଙ୍କର ଜୀବନ ଗତିଶୀଳ । କର୍ତ୍ତବ୍ୟର ଆହ୍ୱାନ ଏବଂ ଅନେକ ଚାପ ମଧ୍ୟରେ ସେ କେବେ ପରିବାର ପ୍ରତି ବିତୃଷ୍ଣା ପ୍ରଦର୍ଶନ କରି ନାହାନ୍ତି ।

## ବିଦେଶ ଭ୍ରମଣ :

ଶରତ ବାବୁ ୧୯୭୩ ମସିହା ମେ ମାସରେ ଚାରି ସପ୍ତାହ ପାଇଁ ଓଡ଼ିଶାର ୨୪ ଜଣ ନାଗରିକ ଦଳର ନେତା ଭାବରେ ବେସରକାରୀ ସଙ୍ଗଠନ 'Friends from Orissa' ଜରିଆରେ ଫ୍ରାନ୍‌ସ' ଇଂଲଣ୍ଡ

ଓ ସୁରଜରଲାଣ୍ଡ ପ୍ରଭୃତି ଦେଶ ଭ୍ରମଣରେ ଯାଇଥିଲେ । ଅନ୍ତର୍ଜାତୀୟ ବନ୍ଧୁତ୍ୱ ସ୍ଥାପନ ଏହି ଦଳର ଲକ୍ଷ୍ୟ ଥିଲେ ମଧ୍ୟ ଶ୍ରୀ ପୂଜାରୀ ବିଦେଶର ଚଳଚ୍ଚିତ୍ର, ପ୍ରେକ୍ଷାଳୟ ଏବଂ ନିର୍ଦ୍ଦେଶନା ଜାଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ।

## ଶ୍ରୀ ପୂଜାରୀଙ୍କର ଅଭିନୀତ ଚଳଚ୍ଚିତ୍ରର ନାମ :

ମହାଲକ୍ଷ୍ମୀ ପୂଜା (୧୯୫୯ ; ଦସ୍ୟୁ ରତ୍ନାକର (୧୯୬୧), ନୂଆ ବୋଉ (୧୯୬୨), ଜୀବନସାଥୀ (୧୯୬୩) ସାଧନା (୧୯୬୪) ନବଜନ୍ମ (୧୯୬୪); ଭାଇ ଭାଉଜ (୧୯୬୬) ମାଟିର ମଣିଷ (୧୯୬୭) ଅରୁନ୍ଧତୀ (୧୯୬୮) ଧରିତ୍ରୀ (୧୯୭୩), ଘର ସଂସାର (୧୯୭୩) ମୁକ୍ତା (୧୯୭୫-ମୁକ୍ତିଲାଭ କରିନାହିଁ) ଡାଅପୋଇ (୧୯୭୬) ଅଭିମାନ-(୧୯୭୭) । ଅମର ପ୍ରେମ (୧୯୭୭) ସମର୍ପଣ- (୧୯୭୮) ପତିପତ୍ନୀ (୧୯୭୮-୭୯) ଜନ୍ମଦାତା-(୧୯୭୮-୭୯) ତପସ୍ୟା (୧୯୮୦-୮୧) ମଥୁରା ବିଜୟ (୧୯୮୦-୮୧) ଅଶାନ୍ତଗ୍ରହ (୧୯୮୨) ଅସ୍ତରାଗ (୧୯୮୨) ଫୁଲଚନ୍ଦନ (୧୯୮୨), ଭକ୍ତ ସାଲବେଗ (୧୯୮୨-୮୩) ମାନ ଅଭିମାନ-(୧୯୮୪-ମୁକ୍ତିଲାଭ କରିନାହିଁ) ଜୋଇଁପୁଅ-(୧୯୮୪-୮୫) ବାବୁଲ (୧୯୮୪-୮୫) ନ'ମାଣ ଆଠଗୁଣ୍ଠ (୧୯୮୫-୮୬) ସବୁମାପ୍ପାରେ ବାପ୍ପା (୧୯୮୫-୮୬) ଅନ୍ଧଦିଗନ୍ତ (୧୯୮୮-୮୯) ଭୂଖା-୧୯୯୦, ଝିଲ (୧୯୯୨-ମୁକ୍ତି ଅପେକ୍ଷାରେ ଅକ୍ଷିତୃତୀୟା (୧୯୮୦-୮୧) ଅରଣ୍ୟ ରୋଦନ ୧୯୯୩-ମୁକ୍ତି ଅପେକ୍ଷାରେ ।

●



# କବି ଓ ଔପନ୍ୟାସିକ ଲକ୍ଷ୍ମୀଧର ନାୟକ

ଡଃ କୃଷ୍ଣକୁମାର ମହାନ୍ତି

ଓଡ଼ିଶାର ବରିଷ୍ଠ କବି, ଔପନ୍ୟାସିକ ଏବଂ ନାଟ୍ୟକାର ଶ୍ରୀ ଲକ୍ଷ୍ମୀଧର ନାୟକ ତାଙ୍କର ଏକନିଷ୍ଠ ସାହିତ୍ୟ ସାଧନା ପାଇଁ ବିଦଗ୍ଧ ପାଠକ ମହଲରେ ସୁପରିଚିତ ।

ଏଇ ସ୍ୱନାମଧନ୍ୟ ସାହିତ୍ୟିକ ପୁରୀ ଜିଲ୍ଲାର ଡେଲାଙ୍ଗ ଷ୍ଟେସନ ଠାରୁ ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ ଅଖ୍ୟାତ ପଲ୍ଲୀ ଗାଁ 'ଗୁଡ଼ୁପାଇଲେ'ରେ ୧୯୧୩ ମସିହା ନଭେମ୍ବର ୧ ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟକାଳ ଓ ତାରୁଣ୍ୟର କର୍ମମୟ ଜୀବନ ବିତିଥିଲା ଓଡ଼ିଶାର ଉପକୂଳ ଅଞ୍ଚଳଠାରୁ ଶହ ଶହ ମାଇଲ ଦୂରରେ, ବନ୍ଧୁର ନାଞ୍ଚଳ (?) ସିଂହଭୂମିରେ ।

ବିହାର ପ୍ରଦେଶର ଲୌହନଗରୀ ଜାମସେଦପୁରରେ ଏକାଦିକ୍ରମେ ଚଉଦ ବର୍ଷ ରହିଥିଲେ ସେ । ତାଙ୍କୁ ଯେତେବେଳେ ମାତ୍ର ପାଞ୍ଚବର୍ଷ, ତାଙ୍କ ବାପା ବଳଭଦ୍ର ନାୟକଙ୍କ ସଙ୍ଗେ ସେ ଯାଇଥିଲେ ଜାମସେଦପୁର ୧୯୧୮ରେ ।

ବଳଭଦ୍ରବାବୁ ଥିଲେ ଟାଟା କମ୍ପାନୀର କେମିକାଲ ଲାବୋରେଟୋରୀରେ କେମିଷ୍ଟ, ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେହିଠାରେ ଶ୍ରୀ ନାୟକଙ୍କ ଲେଖକ ଜୀବନର ଅଭ୍ୟୁତ୍ଥାନ ହୋଇଥିଲା । ୧୯୨୪ ମସିହାରେ ।

ସୁଦୂର ବର୍ଣ୍ଣିନାଞ୍ଚଳରେ ରହି ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହିତ ଯୋଗାଯୋଗ ସ୍ଥାପନ ହେବା ପଛରେ ଯେଉଁ ଆକସ୍ମିକ ଘଟଣାଟି ଥିଲା, ସେଇଟି ହେଲା·········

୧୯୩୪ ମସିହାରେ ନିଖିଳ ଉତ୍କଳ ଗଞ୍ଜାମ କବି ସମ୍ମିଳନୀ ସମ୍ପର୍କରେ ଏକ ବିଜ୍ଞାପନ ପ୍ରକାଶିତ ହୁଏ ଦୈନିକ ସମ୍ବାଦପତ୍ର 'ସମାଜ'ରେ । ସେଥିରେ ଗଳ୍ପ ଓ କବିତା ପ୍ରତିଯୋଗିତାର ବ୍ୟବସ୍ଥା କଥା ଉଲ୍ଲେଖ ଥାଏ । ଶ୍ରେଷ୍ଠ ଗଳ୍ପ ଲେଖକଙ୍କୁ ଶହେ ଟଙ୍କା ପୁରସ୍କାର ଏବଂ 'ବିରହିଣୀ' ଶୀର୍ଷକ କବିତାର ଶ୍ରେଷ୍ଠ କବିଙ୍କୁ ମହୁରୀ ଯୁବରାଜ କୃପାସିନ୍ଧୁ ପଟ୍ଟଦେବଙ୍କ ପ୍ରଦତ୍ତ ସ୍ୱର୍ଣ୍ଣପଦକ ଦିଆଯିବ ବୋଲି ଘୋଷଣା କରାଯାଇଥାଏ । ଏଇ ସୁଯୋଗରେ ଶ୍ରୀ ନାୟକ ଗୋଟିଏ ଗଳ୍ପ ଏବଂ 'ବିରହିଣୀ' ଶୀର୍ଷକ କବିତା ଲେଖି ପଠାଇ ଦେଇଥିଲେ ସମ୍ପାଦକ କପିଳେଶ୍ୱର ପ୍ରସାଦ ଦାଶଙ୍କ ଠିକଣାରେ । ଏଇ ସମ୍ମିଳନୀର ପୁରୋଭାଗରେ ଥିଲେ 'ଭାରତ ସେବକ ସମାଜ'ର ଆଜୀବନ ସଭ୍ୟ କର୍ମବୀର ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ । ଗଞ୍ଜାମରେ ଅନୁଷ୍ଠିତ ଏଇ କବି ସମ୍ମିଳନୀରେ ଅଧ୍ୟକ୍ଷତା କରିଥିଲେ ନାରୀକବି ଡାକ୍ତର କୁନ୍ତଳା କୁମାରୀ ସାବତ ।

ଦୁଇ ମାସ ପରେ ସମ୍ମିଳନୀର ବିବରଣୀ ପ୍ରକାଶ ପାଇଥିଲା 'ସମାଜ'ରେ । 'ବିରହିଣୀ' ଶୀର୍ଷକ କବିତା ପାଇଁ ଲକ୍ଷ୍ମୀଧର ନାୟକ ସ୍ୱର୍ଣ୍ଣପଦକ ପାଇବା କଥା ଘୋଷଣା କରାଯାଇଥିଲା ।

ଏଇ ସ୍ୱର୍ଣ୍ଣ ପଦକଟିକୁ ଶ୍ରୀ ନାୟକଙ୍କୁ ଦେବା ପାଇଁ ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ଦିନେ ଅକସ୍ମାତ୍ ଆସି ପହଞ୍ଚିଲେ ଜାମସେଦପୁରରେ । ଓଡ଼ିଶାର ବହୁ ପ୍ରତିଷ୍ଠିତ କବି, 'ବିରହିଣୀ' କବିତା ପ୍ରତିଯୋଗିତାରେ ଅଂଶଗ୍ରହଣ କରି ବିଫଳ ହୋଇଥିବା ବେଳେ, ବିହାରର ଜାମସେଦ-ପୁରରୁ ଜଣେ ଅନାମଧେୟ ଲେଖକ କିପରି ସ୍ୱର୍ଣ୍ଣପଦକ ପାଇବାର ସୌଭାଗ୍ୟ ଅର୍ଜନ କଲା—ଏହା ପରୀକ୍ଷା ନିରୀକ୍ଷା କରି ଦେଖି, ସ୍ୱର୍ଣ୍ଣ ପଦକଟିକୁ ଶ୍ରୀ ନାୟକଙ୍କୁ ଦେବାପାଇଁ—'ପୁନା'ରେ ଅନୁଷ୍ଠିତ ହେଉଥିବା 'ଭାରତ ସେବକ ସମାଜ'ର ବାର୍ଷିକ ସଭାରୁ କଟକ ଫେରିବା ବାଟରେ ସିଧା ସଳଖ ଆସି ପହଞ୍ଚିଲେ ଟାଟାରେ । ମାତ୍ର ଗୋଟିଏ ଦିନ ରହିବାର

ଯୋଜନା ବଦଳେଇ ଶ୍ରୀ ନାୟକଙ୍କର କବିତା ପାଣ୍ଡୁଲିପି ସମସ୍ତ ପଢ଼ି ଏପରି ମୁଗ୍ଧ ହୋଇଯାଇଥିଲେ ଯେ, ଶ୍ରମିକ ସହରରେ ଗୋଟିଏ ସାହିତ୍ୟ ସଭା କିପରି ହେବ, ସେଥିପାଇଁ ଜିଦ୍ ଧରି ବସିଥିଲେ ।

ସାହୁ ମହାଶୟଙ୍କର ଏଇ ଆଗ୍ରହକୁ ସମ୍ମାନ ଦେଇ ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ପ୍ରଥମ ସାଂସ୍କୃତିକ ଅନୁଷ୍ଠାନ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠା କରିଥିଲେ ଶ୍ରୀ ନାୟକ ସେଇ ୧୯୩୪ ମସିହାରେ ।

ଏଇ ଅବସରରେ ଓଡ଼ିଶାର ତତ୍କାଳୀନ ସାହିତ୍ୟିକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂ, ହରିଶ୍ଚନ୍ଦ୍ର ବଡ଼ାଳ, ଶରତ ଚନ୍ଦ୍ର ମୁଖାର୍ଜୀ, ସଚ୍ଚି ରାଉତରାୟ, ରାଧାମୋହନ ଗଡ଼ନାୟକ ପ୍ରଭୃତିଙ୍କୁ ଚିଠି ଲେଖି ଲକ୍ଷ୍ମୀଧର ନାୟକଙ୍କୁ ପରିଚିତ କରାଇ ଦେଇଥିଲେ ସାହୁ ମହାଶୟ; ଏବଂ ତାଙ୍କର ଏଇ ସାହିତ୍ୟିକ ଉଦାରତା ଯୋଗୁଁ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକର ବିଭିନ୍ନ ଅନୁଷ୍ଠାନ ପତ୍ର ପତ୍ରିକାର ସମ୍ପାଦକ ଏବଂ ପୁସ୍ତକ ପ୍ରକାଶକଙ୍କ ସହିତ ଶ୍ରୀ ନାୟକଙ୍କ ସମ୍ପର୍କ ସ୍ଥାପନ କରିବା କାର୍ଯ୍ୟଟି ସହଜ ଏବଂ ସ୍ୱଚ୍ଛନ୍ଦ ହେବା ସମ୍ଭବ ହୋଇଥିଲା ।

ପଣ୍ଡିତ ଗୋପବନ୍ଧୁ ୧୯୧୩ ରୁ ୧୯୨୦ ପର୍ଯ୍ୟନ୍ତ ସିଂହଭୂମିର ଚକ୍ରଧରପୁରରେ ରହି, ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶା ସହିତ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଢ଼ିବା ସମ୍ଭବ କରିବା ପାଇଁ ଓଡ଼ିଆ ଶିକ୍ଷାର କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ସିଂହଭୂମ ଏବଂ ଧଳଭୂମ୍‌ର ପୁରପଲ୍ଲୀରେ । କିନ୍ତୁ ୧୯୨୦ରେ ସ୍ୱାଧୀନତା ସଂଗ୍ରାମରେ କଂଗ୍ରେସରେ ଯୋଗଦେଇ ସେ କାରାବରଣ କଲାପରେ, ଏଇ ଶିକ୍ଷା ଆନ୍ଦୋଳନ ଲକ୍ଷ୍ୟଭ୍ରଷ୍ଟ ହୋଇ ଯାଇଥିଲା ।

ଏଇ ବ୍ୟର୍ଥତାର ଚଉଦ ବର୍ଷ ପରେ ଶ୍ରୀ ନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ 'ସିଂହଭୂମି ଓଡ଼ିଆ ସାହିତ୍ୟ ସମାଜ' ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ଏକ ଐତିହାସିକ ପଦକ୍ଷେପ ଭାବେ ସର୍ବସାଧାରଣରେ ସ୍ୱାଗତଯୋଗ୍ୟ ହୋଇଥିଲା ।

ଏଇ ସାହିତ୍ୟ ସମାଜ ପକ୍ଷରୁ ଅନ୍ୟୂନ ପଚିଶିଟି ସଭା ଓ ବିଶେଷ ଅଧିବେଶନମାନଙ୍କରେ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଅଧିବାସୀଙ୍କୁ ଜାଗ୍ରତ କରାଇ

ଅଗ୍ନିମନ୍ତ୍ରରେ ଉଦ୍‌ବୁଦ୍ଧ କରିବା ପାଇଁ ଆଠମଲ୍ଲିକ ରାଜାସାହେବ କିଶୋରଚନ୍ଦ୍ର ଦେବଙ୍କ ଠାରୁ ଆରମ୍ଭ କରି, କେନ୍ଦୁଝରର ଷ୍ଟେଟରାୟ ସାହେବ ଲକ୍ଷ୍ମୀ ନାରାୟଣ ଭଞ୍ଜଦେବ, ପଣ୍ଡିତ ଗୋପାଳଚନ୍ଦ୍ର ପ୍ରହରାଜ, ପଣ୍ଡିତ ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜ, କାଳନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂ, ପଣ୍ଡିତ ନୀଳକଣ୍ଠ ଦାସ, ସଚି ରାଉତରାୟ, ରାଧାମୋହନ ଗଡ଼ନାୟକ, ଡକ୍ଟର ଗୋକୁଳଚନ୍ଦ୍ର ଶତପଥୀ, ବାମଦେବ ମିଶ୍ର, ଗଙ୍ଗାଧର ମହାପାତ୍ର, ସେକ ମତଲୁବ ଅଲ୍ଲୀଙ୍କ ପରି ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଆଣି ଭାଷଣ ଦେବାର ବ୍ୟବସ୍ଥା କରାଇବା ଯେ ଏକ କାଳଜୟୀ ସାଂସ୍କୃତିକ ଆନ୍ଦୋଳନର କଥା, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ବିଶେଷ କରି ୧୯୮୪ ମସିହାରେ ଏଇ ସାହିତ୍ୟ ସମାଜର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ 'ସୁବର୍ଣ୍ଣ ଜୟନ୍ତୀ' ପାଳନ ଅବସରରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଶତବାର୍ଷିକୀ କାର୍ଯ୍ୟକ୍ରମକୁ ପ୍ରଣିଧାନଯୋଗ୍ୟ କରିବା ପାଇଁ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଉଦ୍‌ବୋଧନ ଦେବା ପାଇଁ ଡାକି ଆଣିବା ପଛରେ ଶ୍ରୀ ନାୟକଙ୍କ ସାଙ୍ଗଠନିକ ପାରଙ୍ଗମତା ଏବଂ ସମଗ୍ର ବିଚ୍ଛିନ୍ନାଞ୍ଚଳରେ ସିଂହଭୂମିର ଗୁରୁତ୍ୱକୁ ଅଗ୍ରାଧିକାର ଦେଇ ଓଡ଼ିଶା ସହିତ ତା'ର ମିଶ୍ରଣ ପାଇଁ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଲାଗି ମୁଖ୍ୟମନ୍ତ୍ରୀଙ୍କୁ ହୃଦବୋଧ କରାଇବା ଦିଗରେ ଶ୍ରୀ ନାୟକ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ତାହା ପ୍ରତ୍ୟେକଙ୍କ ଦ୍ୱାରା ପ୍ରଶଂସିତ ହେବା ଲକ୍ଷ୍ୟ କରା ଯାଇଥିଲା । ସ୍ୱାଧୀନତା ପ୍ରାପ୍ତି ପରଠାରୁ ଓଡ଼ିଶାର କୌଣସି ମୁଖ୍ୟମନ୍ତ୍ରୀ ସିଂହଭୂମିକୁ ଆସିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି ନାହିଁ, କାରଣ ଓଡ଼ିଶା ସହିତ ସିଂହଭୂମ୍‌ର ମିଶ୍ରଣ ଦାବି ସମସ୍ୟାର କ'ଣ ହେଲା—ଏ ପ୍ରଶ୍ନର ଯଥାଯଥ ଉତ୍ତର ଦେବା ସେମାନଙ୍କ ପକ୍ଷେ ସହଜସାଧ୍ୟ ନୁହେଁ ବୋଲି, ଗଣ୍ଡଗୋଳର ଆଶଙ୍କାରେ ଏକପ୍ରକାର ଦୂରେଇ ରହିବା ଶ୍ରେୟସ୍କର ମନେ କରିଥାନ୍ତି ।

ବସ୍ତୁତଃ ୧୯୩୪ ସାଲ୍‌ଟି ହେଉଛି ଶ୍ରୀ ନାୟକଙ୍କ ସାହିତ୍ୟିକ ଜୀବନ ପାଇଁ ଏକ "ଆକସ୍ମିକ-ସୁଯୋଗ"ର ବର୍ଷ । କାରଣ ଦୈନିକ 'ସମାଜ'ରେ ଏକ ବିଜ୍ଞାପନ ପଢ଼ି "ନିଖିଳ ଉତ୍କଳ ଗଞ୍ଜାମ କବି

ସମ୍ମିଳନୀ'ର  କବିତା ପ୍ରତିଯୋଗିତାରେ ଯୋଗ ଦେଇ ସ୍ୱର୍ଣ୍ଣ ପଦକ ପାଇଁ ରାଜ୍ୟସ୍ତରରେ  ସମ୍ମାନ ଅର୍ଜ୍ଜନ କଲାପରେ, ସେଇ ବର୍ଷ  ପୁଣି ଦୈନିକ 'ସମାଜ'ର  ଅନ୍ୟ  ଏକ ବିଜ୍ଞାପନରେ 'ସହକାର' ମାସିକ  ପତ୍ରିକାର ସଂପାଦକ ବାଲକୃଷ୍ଣ କରଙ୍କ ପକ୍ଷରୁ  'ଆନନ୍ଦ ଲହରୀ'  ଉପନ୍ୟାସ  ମାଳା ପାଇଁ ନୂତନ ଉପନ୍ୟାସର ପାଣ୍ଡୁଲିପି  ମାଗିବା  ଘଟଣାଟି  ମଧ୍ୟ  ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ବିଜ୍ଞାପନଟି ପଢ଼ି ଶ୍ରୀ ନାୟକ ପୁଣି  ଏକ  ସୁଯୋଗ  ନେବା ପାଇଁ ତାଙ୍କର  ପ୍ରଥମ  ଉପନ୍ୟାସ  'ଉଦ୍‌ଭ୍ରାନ୍ତ'ର  ପାଣ୍ଡୁଲିପି  ପଠାଇଥିଲେ, ମାନସିକ ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ଭିତରେ ; କିନ୍ତୁ ଶ୍ରୀ କରଙ୍କ ଦ୍ୱାରା ଏହା ଉଚ୍ଚ ପ୍ରଶଂସିତ ହୋଇ ଯେତେବେଳେ 'ଭାରତୀ'ର ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ ସେଇଟି ପ୍ରକାଶ ପାଇଲା···ଶ୍ରୀ ନାୟକ,  ତାଙ୍କ ଲେଖକ ଜୀବନର ବିସ୍ତୃତ ଦିଗ୍‌ବଳୟ ଯେପରି ହଠାତ୍‌ ଆଲୋକିତ ହୋଇ ଉଠିଛି, ଏଇପରି ଏକ ରୋମାଞ୍ଚରେ ସ୍ପନ୍ଦିତ ହୋଇ ଉଠିଥିଲେ । ଏହାପରଠୁ ଓଡ଼ିଶାର ତତ୍କାଳୀନ ସମସ୍ତ ସାହିତ୍ୟ ପତ୍ରିକା, ବାଳକୃଷ୍ଣ କରଙ୍କ ସଂପାଦିତ 'ସହକାର', ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ 'ନବଭାରତ', ସବୁଜ ସାହିତ୍ୟ ଗୋଷ୍ଠୀ ପକ୍ଷରୁ ପ୍ରକାଶିତ 'ଯୁଗବାଣୀ' ଓ କୃପାସିନ୍ଧୁ ପଟ୍ଟନାୟକଙ୍କ ସମ୍ପାଦିତ ସାପ୍ତାହିକ ପତ୍ରିକା 'ନବୀନ'ରେ ଧାରାବାହିକ ଭାବେ ଲେଖାଲେଖି କରିବାର ଅବାରିତ ସୁଯୋଗ ପାଇଲେ ଶ୍ରୀ ନାୟକ ।

ଏଇ ସମୟରେ; ସାହିତ୍ୟ ସାଧନା କ୍ଷେତ୍ରରେ ଦୁଇଟି ଲୋକପ୍ରିୟ ଉପନ୍ୟାସ ରଚନା କରିଥିବାରୁ ବାଲକୃଷ୍ଣ ବାବୁ ଶ୍ରୀ ନାୟକଙ୍କୁ ପାରିଶ୍ରମିକ ଦେବାର  ବଦାନ୍ୟଭାବ  ଦେଖାଇବା  ଯୋଗୁ  ଲେଖାଲେଖି  ପାଇଁ ପାରିଶ୍ରମିକ ପାଇବାରେ ଶ୍ରୀ ନାୟକ ହେଉଛନ୍ତି 'ପ୍ରଥମ ଔପନ୍ୟାସିକ', ଏ ସୁଖ୍ୟାତିର ମଧ୍ୟ ଅଧିକାରୀ ହେଲେ ସେ । ଏହାଛଡ଼ା ସୁଦୂର ଦକ୍ଷିଣାଞ୍ଚଳରେ ରହି ମଧ୍ୟ ଓଡ଼ିଶାର ଉପକୂଳ ଅଞ୍ଚଳବାସୀ କବି, ଔପନ୍ୟାସିକ, ନାଟ୍ୟକାର, ଅଭିନେତା ଏବଂ ସଙ୍ଗୀତ ଶିଳ୍ପୀମାନଙ୍କ ସହିତ ଚିଠିପତ୍ରର ଆଦାନ ପ୍ରଦାନ ଭିତରେ, ସଖ୍ୟତାର ଏକ ମନୋଜ୍ଞ ସମ୍ପର୍କ ଗଢ଼ି ତୋଳିବାରେ ସମର୍ଥ ହେଲେ ମଧ୍ୟ ଶ୍ରୀ ନାୟକ ।

ଓଡ଼ିଶାର ସାହିତ୍ୟ ଜଗତକୁ ଏକ ସ୍ୱାଭିମାନୀ ଲେଖକ ଭାବେ ପ୍ରବେଶ କଲାପରେ, ବନ୍ଧିନ୍ନାଞ୍ଚଳ ସିଂହଭୂମିରେ ତାଙ୍କର କର୍ମକୁଶଳତାକୁ ସେଇ ମାର୍ଗରେ ସଞ୍ଚାଳିତ କରିବା ପାଇଁ ସିଦ୍ଧାନ୍ତ ନେଲେ ଶ୍ରୀ ନାୟକ । ଦେଶ ମିଶ୍ରଣ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଆ ଜାତିର ମୁଖ୍ୟ ସମସ୍ୟା ଥିଲି ସେତେବେଳେ । ଏଇ ସମସ୍ୟାର ସମାଧାନ ପାଇଁ ସିଂହଭୂମିର ଓଡ଼ିଆ ଜନସାଧାରଣଙ୍କୁ ଏକ ଆନ୍ଦୋଳନ ଭୂମିକାରେ ଓହ୍ଲାଇବା ପାଇଁ ଆହ୍ୱାନ ଦେବାଲାଗି ସେ ପ୍ରକାଶ କଲେ, 'ବନ୍ଧିନ୍ନା' ମାସିକ ସାହିତ୍ୟ ପତ୍ରିକା ।

ଏହାର ପ୍ରଥମ ସଂଖ୍ୟାରେ ପ୍ରକାଶ ପାଇଲା ତତ୍କାଳୀନ ପ୍ରଥିତଯଶା ଗଦ୍ୟ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ପ୍ରବନ୍ଧ 'ସିଂହଭୂମିରେ ଶୃଗାଳ' । ପଣ୍ଡିତ ଗୋଦାବରୀଶ ମିଶ୍ର, ନାରୀନେତ୍ରୀ ସରଳା ଦେବୀ, କର୍ମବୀର ଲକ୍ଷ୍ମୀନାରାୟଣ ସାହୁଙ୍କ ଲେଖାରେ ଏ ସଂଖ୍ୟାଟି ଋଦ୍ଧିମନ୍ତ ହେଲା ଏବଂ ଏଇ ସଂଖ୍ୟାରେ ଶ୍ରୀ ନାୟକ ଟାଟା କମ୍ପାନୀରେ ତାଙ୍କର ଶ୍ରମିକର ଜୀବନର ପ୍ରଥମ ଅଭିଜ୍ଞତାର କଥା ଲେଖିଥିଲେ, 'ମଜଦୁର' କବିତାରେ । ଏଇ କବିତାଟି ଟାଟା କମ୍ପାନୀର ଲିଆସନ୍ ଅଫିସର ଗୌରାଙ୍ଗ ଚରଣ ମହାନ୍ତିଙ୍କ ଦୃଷ୍ଟିରେ ପଡ଼ିଲା । ସେ ଏହାକୁ ଇଂରାଜୀରେ ଅନୁବାଦ କରି ଟାଟା କମ୍ପାନୀର କେନ୍ଦ୍ର ଅଫିସ ବମ୍ବେକୁ ପଠାଇଦେବା ଫଳରେ ସେଠାରୁ ନିର୍ଦ୍ଦେଶ ଆସିଲା—ଜାମସେଦପୁରରେ ଅବସ୍ଥିତ ଟାଟା କମ୍ପାନୀର ଚିଫ୍ ଟାଉନ୍ ଆଡ଼ମିନିଷ୍ଟ୍ରେଟର ଡି: ଏଚ୍: ବାର୍ଡଙ୍କ ପାଖକୁ—ଶ୍ରୀ ନାଏକଙ୍କୁ କୈଫିୟତ୍ ତଲବ କରିବା ପାଇଁ । କାରଣ ଟାଟା କମ୍ପାନୀର ଡେୟରୀ ଫାର୍ମ ଅଫିସରେ ଶ୍ରୀ ନାୟକ ସେତେବେଳେ ଶ୍ରମିକର କରୁଥିଲେ ଏବଂ ଏଇ ଅଫିସଟି ଟିସ୍କୋ ଟାଉନ୍ ଡ଼ିପାର୍ଟମେଣ୍ଟ ସହିତ ସଂଲଗ୍ନ ଥିଲା ।

ମିଷ୍ଟର ବାର୍ଡ ଶ୍ରୀ ନାୟକଙ୍କୁ ତାଙ୍କ ଅଫିସ ରୁମ ଭିତରକୁ ଡ଼କେଇ ଆଣି ସିଧା ସଳଖ ପଚାରିଲେ : ତୁମେ କ'ଣ କମ୍ୟୁନିଷ୍ଟ ?

ଏ ପ୍ରଶ୍ନର କୌଣସି ଉତ୍ତର ନଦେଇ ଚୁପ୍‌ଚାପ୍ ଛିଡ଼ା ହୋଇ ରହିଲେ ନାୟକ ।

ବାର୍ଡଙ୍କର ଦ୍ୱିତୀୟ ଅଭିଯୋଗ ହେଲା : ତୁମେ ଏବଂ ତୁମ ବାପା, ଦୁହେଁ ଟାଟା କମ୍ପାନୀର ଅନ୍ନରେ ପ୍ରତିପାଳିତ ହେଉଛ । ଅଥଚ

କ ଦୁଃସାହସ ତୁମର—ଟିସ୍କୋ ମାନେଜମେଣ୍ଟ ବିରୁଦ୍ଧରେ ତୁମେ ଯେଉଁଥା ତା' ଲେଖିଛ କବିତାରେ । କ'ଣ ଏହାର କାରଣ ? ଶ୍ରମିକ ନେତା ଅବଦୁଲ ବାରିଙ୍କ ଇଉନିୟନର ତୁମେ କ'ଣ ସଭ୍ୟ ? ଜବାବ ଦିଅ, କହି ଗର୍ଜି ଉଠିଲେ ମିଷ୍ଟର ବାର୍ଡ଼ ।

ଏଥର ଉତ୍ତର ଦେଲେ ନାୟକ । କହିଲେ ଜଣେ ଖଟିଖିଆ ମଜଦୁର ଭାବେ ମୁଁ ଯାହା ଅନୁଭବ କରିଛି, ସେଇ କଥା ଲେଖିଛି ।

—ଏ' ଲେଖିବାର ପରିଣାମ କ'ଣ ହେବ ଜାଣିଛ ? ଗର୍ଜି ଉଠିଲେ ଇଂଲଣ୍ଡବାସୀ ଗୋରା ସାହେବ । କୁଲଭର୍ଡ଼ ରୋଡ଼ର ଛକ ଉପରେ, ସମସ୍ତଙ୍କ ଆଗରେ ତୁମକୁ ଗୁଳି କରି ଦିଆଯିବ । ଦୁଇଦିନ ସମୟ ଦିଆଗଲା । ଯାଅ, ଭୁଲ୍ ସ୍ୱୀକାର କରି କ୍ଷମା ମାଗ । ନଚେତ୍...

ଦୁଇଦିନ ନୁହେଁ, ମାତ୍ର ଦୁଇ ଘଣ୍ଟା ଭିତରେ ଶ୍ରୀ ନାୟକ ତାଙ୍କ ଇସ୍ତଫାପତ୍ର ଲେଖି ଦେଇ ଆସିଲେ ତାଙ୍କ ଉପରିସ୍ଥ ହାକିମ—ଫାର୍ମ ସୁପରିନ୍‌ଟେନ୍‌ଡେଣ୍ଟଙ୍କୁ ।

କିନ୍ତୁ ଘରକୁ ଫେରିଆସି ଦେଖିଲେ - 'ଜି' ଟାଉନ ମୈଦାନ୍ କଡ଼, ତାଙ୍କ 'ଓ' ରୋଡ଼ ୨୭ ନମ୍ବର କ୍ୱାଟର ସାମନାରେ କମ୍ପାମ୍ପ ଦଳଲ ଦୁଇଜଣ ଗୁଣ୍ଡା ଟହଲ ମାରୁଛନ୍ତି । ନାୟକଙ୍କୁ ଦେଖିବା ମାତ୍ରେ ସେମାନେ ଧମକ୍ ଦେଇ ଗର୍ଜି ଉଠିଲେ ।

—ଖବରଦାର୍, ଆଉ ବେଶି ଆଗକୁ ବଢ଼ିବ ତ, ମୁଣ୍ଡଗଣ୍ଡି ଅଲଗା କରି ଦିଆଯିବ ।

ଏ ଧମକର ପାଲଟା ଜବାବରେ ଗୁଣ୍ଡା ଦୁଇଜଣଙ୍କୁ କିଛିକ୍ଷଣ ବିସ୍ଫାରିତ ଦୃଷ୍ଟିରେ କେବଳ ଚାହିଁଥିଲେ ଶ୍ରୀ ନାୟକ ।

ଏଇ ଘଟଣା ୧୯୩୭ ମସିହାର କଥା । ସେତେବେଳେ ଶ୍ରୀ ନାୟକଙ୍କୁ ମାତ୍ର ୨୩ ବର୍ଷ । ଯୁବକ ସୁଲଭ ଉନ୍ମାଦନା ତାଙ୍କ ରକ୍ତରେ । ଭାବୁକ ମନର କଳ୍ପନାରେ ଅନେକ ସ୍ୱପ୍ନ । ଅନେକ ଆଶା । ଅନେକ ଶପଥ । ଦେଶ ଓ ଜାତି ପାଇଁ ସେ କିଛି କରିବେ । ଏଇଟି ସେ ଉତ୍କଳମଣିଙ୍କୁ ଦେଖିଛନ୍ତି ୧୯୨୪ ରେ । ଏଇଠି ୧୯୩୦ରେ ଉତ୍କଳ ଗୌରବ ମଧୁସୂଦନ ତାଙ୍କ ବାପାଙ୍କ ଆତିଥେୟତା ଗ୍ରହଣ କରିଥିଲେ ।

କୁଳବୃଦ୍ଧଙ୍କ ସ୍ନେହସିକ୍ତ ଆଶୀର୍ବାଦ ଏବେ ବ ପାଶୋର ହେଉ ନାହିଁ ମନରୁ ।

ତେବେ, ଏପରି ଏକ ସାଂଘାତିକ ଭୁଲ କଲେ ସେ କାହିଁକି ? କାହିଁକି ଟାଟା କମ୍ପାନୀର ଦ୍ୱାରସ୍ଥ ହେଲେ ? କାହିଁକି ଦୁ' ପଇସା ରୋଜଗାର ପାଇଁ ପୁଞ୍ଜିପତି ରାକ୍ଷସର ଶରଣାପନ୍ନ ହେଲେ ?

ଦୁଇବର୍ଷ ପୂର୍ବ ୧୯୩୪ ମସିହାର ଏକ ସୁପ୍ରଭାତରେ, ଯେଉଁ ଯୁବକ ବାଣୀ ସାଧନାର ଆବେଗରେ ଉଦ୍ଦୀପ୍ତ ହୋଇଥିଲା, ସିଂହଭୂମିର ପୁଣ୍ୟ ମାଟିରେ ସାଂସ୍କୃତିକ ଆନ୍ଦୋଳନ କରିବା ପାଇଁ ଶପଥ ନେଇଥିଲା, ଏବଂ ତାର ସେଇ ଅଭିଳାଷକୁ ଚରିତାର୍ଥ କରିବା ପାଇଁ ଏକ ଅଦୃଶ୍ୟଶକ୍ତି ଯାହାକୁ ସେଦିନ ପ୍ରେରଣା ଯୋଗାଇ ଦେଇଥିଲା ଏବଂ ସେ ତା'ର ତରୁଣ ଜୀବନର ନବଉନ୍ମେଷ ଦେଖିଥିଲା ଅଗ୍ରନିକ ଭାବେ . ଛନ୍ଦ ଓ ଧ୍ୱନିର ପରିପ୍ରକାଶରେ, କବିତାରେ, ଉପନ୍ୟାସରେ ଏବଂ ନାଟକରେ : ସେଇ ସାରସ୍ୱତ ଭବନାରୁ ସେ ଓହରି ଆସିଲା କାହିଁକି ? କାହିଁକି ପଥଭ୍ରଷ୍ଟ ହେଲା ? ଲକ୍ଷ୍ୟଚ୍ୟୁତ ହେଲା କାହିଁକି ?

—ଅଭାବ ? ଦୈନ୍ୟ ! କ୍ଷୁଧା !!

କ'ଣ ଏଇ ସବୁରୁ ପରିତ୍ରାଣ ପାଇବା ପାଇଁ ପୁଞ୍ଜିପତିଙ୍କୁ ଜୀ' ହଜୁର କରିବା ଛଡ଼ା ଆଉ କୌଣସି ରାସ୍ତା ଖୋଲା ନଥିଲା ତା'ପାଇଁ ?

ଭାରାକ୍ରାନ୍ତ ମନ ନେଇ ଗୁମ୍ ହୋଇ ବସିଲେ କବି ସମସ୍ତ ଶ୍ରୀ ନାୟକ । ତା'ପରେ ଏକ ଉନ୍ମାଦନାରେ ହଠାତ ଚହକି ଉଠିଲା ପରି ଚିତ୍କାର କରି ଉଠିଲେ । ନା, ଆଉ ଗୋଲାମଗିରି ନୁହେଁ, ନୁହେଁ ଦାସତ୍ୱର ଖିଦମତ୍‌ଗିରି । 'ମଜଦୁର୍' କବିତା ଲେଖି ସେ ଥରେ ଯେଉଁ ଆହ୍ୱାନ ଦେଇଛନ୍ତି ଖଟିଖିଆ ଶ୍ରମିକ ଗୋଷ୍ଠୀକୁ—ସେଇ ସ୍ଲୋଗାନର ପ୍ଲାକାର୍ଡ ଧରି ସେ ଗୃଲିବେ ପଟୁଆର ଆଗରେ ସବୁଦିନ···

ତାଙ୍କର 'ବର୍ଣ୍ଣିମା' ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି'ର ଇସ୍ତାହାର ରୂପେ କେବଳ ଇଂରେଜ 'ସରକାର ସହିତ ଲଢ଼ିବ ନାହିଁ, କଳ କାରଖାନାରେ ଖଟି ମରୁଥିବା

ମେଦିନୀପୁର ମଣ୍ଡଳର ଦାବି ହାସଲ କରିବା ପାଇଁ ଲେଖନୀର ଖଡ୍‌ଗ ଟେକି ବିପ୍ଳବର ପୁରୋଭାଗରେ ମଧ୍ୟ ସଂଗ୍ରାମ କରି ଚାଲିବ ଚିରକାଳ ।

ହଁ, ସିଦ୍ଧାନ୍ତ ତ ନେଲେ ଶ୍ରୀ ନାୟକ । କିନ୍ତୁ 'ବଙ୍କିମୀ'ର ଧାରାବାହିକ ପ୍ରକାଶନ ପାଇଁ ବ୍ୟବସ୍ଥାର ପନ୍ଥା କ'ଣ ?

ମନର ଏ ଅଭିଳାଷ କଥା, ସେ ପ୍ରଥମେ କହିଲେ ତାଙ୍କ ସ୍ନେହବତ୍ସଳା ଜନନୀ କିଶୋରୀମଣିଙ୍କୁ । କାରଣ ବାପାଙ୍କ ସହିତ, ପାରିବାରିକ ଘଟଣା କେତେ ଗୁଡ଼ିକୁ ନେଇ ଶ୍ରୀ ନାୟକଙ୍କ ସମ୍ପର୍କ ଅତ୍ୟନ୍ତ ତିକ୍ତ ହୋଇ ପଡ଼ିଥିଲା, ତାଙ୍କୁ ଯେତେବେଳେ ମାତ୍ର ୧୭ ବର୍ଷ । ଗୋଟିଏ ପ୍ରେସ୍ କିଣିବା ପାଇଁ ସେ ମାଆଙ୍କୁ କିଛି ଟଙ୍କା ମାଗିଲେ ।

—ଛାପାଖାନା, ପ୍ରେସ୍ ? ଏ ସବୁ କ'ଣରେ ପୁଅ, ମୁଁ ତ କିଛି ବୁଝିପାରୁ ନାହିଁ । ହେଲେ, କେତେ ଟଙ୍କା ଲାଗିବ ?

—କେତେଟଙ୍କା ? ମାଆଙ୍କ ପ୍ରଶ୍ନକୁ କେବଳ ଦୋହରାଇଲେ ଶ୍ରୀ ନାୟକ । କହିଲେ କେତେ ଅଛି ତୋ' ପାଖରେ ଦେ ।

—ରହ, ମୁଁ ହାରଟା ନେଇ ପାଖ ପଡ଼ଶାଘର ମୂର୍ତ୍ତିବାବୁ ସ୍ତ୍ରୀଙ୍କୁ ପଚାରେ, ସେ କେତେ ଦେବ, କହି କିଶୋରୀମଣି ନିଜ ବେକରୁ ସୁନାହାର ଖୋଲି ବାହାରକୁ ଉଠିଗଲେ । ଅଧଘଣ୍ଟା ପରେ ଫେରିଆସି, ବା'ଷଠି ଟଙ୍କା ଆଠଅଣା ବଢେଇ ଦେଲେ ପୁଅ ହାତକୁ । କହିଲେ, ଏତିକି ଦେଲା ତେଲେଙ୍ଗିଆଣି । ନେ, କ'ଣ କରିବୁ କର ।

କେତେମାସ ତଳେ ଦୈନିକ 'ସମାଜ'ରେ ବା'ଷଠି ଟଙ୍କା ଆଠଅଣାରେ, କଲିକତାର ଚିତ୍ପୁର ରୋଡ଼ରେ ମିଳୁଥିବା କାଠ ପ୍ରେସର ଏକ ବିଜ୍ଞାପନଟିଏ ବାହାରିଥିଲା । ଏଥିରେ ହାଣ୍ଡବିଲ ଆଉ ଚିଠି ଲେଖା ପ୍ୟାଡ଼୍ ଛପାହୋଇ ପାରିବ ବୋଲି ସୂଚନା ଦିଆଯାଇଥିଲା । ଶ୍ରୀ ନାୟକ ପଢ଼ିଥିଲେ ଏଇ ବିଜ୍ଞାପନଟିକୁ । ମାଆଙ୍କଠୁ ଟଙ୍କା ନେଇ ସେ କଲିକତା ଯାଇଁ ସେଇଥିରୁ ଖଣ୍ଡେ କିଣି ଆଣିଲେ ।

ସିଂହଭୂମିର ଲୌହନଗରୀ ଜାମସେଦପୁରରେ, ପ୍ରଥମ ଓଡ଼ିଆ ଛାପାଖାନା ଆରମ୍ଭ ହେବାକୁ ଯାଉଛି, ଏହା ଶ୍ରମିକ ସହରର ଓଡ଼ିଆ

ମହଲରେ ବିଜୁଳି ବେଗରେ ପ୍ରଚାରିତ ହୋଇ ସାରିଥିଲା । ସେଇ ଘଟଣା ସତ କି ମିଛ, ଏଇଆ ଠଉରି ବୁଝିବାକୁ, ଶ୍ରୀ ନାୟକଙ୍କ ସମ୍ପର୍କୀୟ ଦାଦା, କୋ-ଅପରେଟିଭ ସୋସାଇଟିର ସେକ୍ରେଟେରୀ ଦୟାନିଧି ନାୟକ, ଆସି ତାଙ୍କ ସୋସାଇଟିର ବାର୍ଷିକ ରିପୋର୍ଟ ଛାପିବାକୁ ଅର୍ଡ଼ର ଦେଇଗଲେ ।

ଶ୍ରୀ ନାୟକ, କାଠ ପ୍ରେସ୍ କିଣି ଆଣିଲେ । ଟାଉନ ବଜାରର ପୁରୁଣା ସାଇକେଲ ବଜାରରେ ଘରଭଡ଼ା ନେଇ, 'ବର୍ତ୍ତିକା' ପ୍ରେସର ସାଇନ୍‌ବୋର୍ଡ ଟାଙ୍ଗିଲେ । ଅରୁଣୋଦୟ ପ୍ରେସ୍‌ରୁ କିଣି ଆଣିଥିବା ଓଡ଼ିଆ ଟାଇପ୍‌କୁ କେସରେ ପକେଇ, କମ୍ପୋଜ କରିବାକୁ ଗୋଟିଏ କମ୍ପୋଜିଟର ଡାକି ଆଣିଲେ ଏବଂ ଲକ୍ଷ୍ମୀଙ୍କ ଫଟୋ ଖଣ୍ଡେ ଟାଙ୍ଗି ପୂଜାପୂଜି ମଧ୍ୟ କଲେ କିନ୍ତୁ— କିନ୍ତୁ ଆଠ ପୃଷ୍ଠାର ବାର୍ଷିକ ରିପୋର୍ଟ ୫୦୦ ଖଣ୍ଡ ଛାପିବାକୁ ୧୫ ଦିନ ଚେଷ୍ଟା କଲାପରେ ମଧ୍ୟ ଶହେଖଣ୍ଡ ବି ପୂରା ହୋଇପାରିଲା ନାହିଁ । ନିର୍ଦ୍ଧାରିତ ଦିନରେ ସୋସାଇଟିର ସାଧାରଣ ସଭାରେ, ସଭ୍ୟମାନଙ୍କୁ ବାର୍ଷିକ ରିପୋର୍ଟର ଆୟ-ବ୍ୟୟ ହିସାବ ଫର୍ଦ୍ଦ ଦିଆଯାଇ ପାରିଲା ନାହିଁ । ଦୟାନିଧି ନାୟକଙ୍କୁ ଅପଦସ୍ଥ ହେବାକୁ ପଡ଼ିଲା ଏକପ୍ରକାର ।

କିନ୍ତୁ ଏହାର ପଛରେ ହିଁ ଥିଲା ଶ୍ରୀ ନାୟକଙ୍କ ପାଇଁ "ଭାଗ୍ୟଲକ୍ଷ୍ମୀ"ଙ୍କ ଅହେତୁକୀ ବରଦାନର ବିପୁଳ ସଙ୍କେତ ।

ସୋସାଇଟିର ବାର୍ଷିକ ରିପୋର୍ଟ ଯଥା ସମୟରେ ଛାପା ହୋଇ ମିଟିଂରେ ବିତରଣ ହେବା ପାଇଁ ନ ଆସିବା ମୂଳରେ କାରଣ କ'ଣ, ଏଇ କଥା ବୁଝିବାକୁ ଯେତେବେଳେ, ମିଟିଂ ପରଦିନ ଆସିଲେ ଦୟାନିଧି ନାୟକ, ଅତ୍ୟନ୍ତ ଲଜ୍ଜିତ ହେଲା ପରି ତଳକୁ ମୁଣ୍ଡ ପୋତି ଠିଆହୋଇ ରହିଲେ ପ୍ରେସ୍ ପ୍ରୋପ୍ରାଇଟର ଲକ୍ଷ୍ମୀଧର ନାୟକ । କହିଲେ, ବାମନ ହୋଇ ଆକାଶର ଚନ୍ଦ୍ରକୁ ପାଇବା ପାଇଁ ମୁଁ ହାତ ବଢ଼େଇଥିଲି ଦାଦା । ବା'ଷଠି ଟଙ୍କା ଆଠଅଣାରେ ଗୋଟିଏ ଛାପାଖାନା କିଣି, ତିନିଶହ ଟଙ୍କାର ଜବ୍ ପ୍ରିଣ୍ଟିଂ କରି ଛ'ଦିନ ଭିତରେ ଦିଆଯାଇପାରେ ଏବଂ ସୌଭାଗ୍ୟର ସୁନାପାହାଡ଼ ଚଢ଼ି କୁବେରପୁରୀର ସ୍ୱପ୍ନ ଦେଖାଯାଇପାରେ ଇଏତ ଏକ ନିର୍ବୋଧ କଳ୍ପିର ବାତୁଳତା । ଏ ମୂର୍ଖତାର କି ବିଧାନ ମୁଁ ଦେବି ଆପଣଙ୍କୁ ! ମୋ' ଧୃଷ୍ଟତାକୁ କ୍ଷମା କରନ୍ତୁ ଦାଦା, ଅନେକ ଅସୁବିଧାରେ ପଡ଼ିବାକୁ ହେଲା ଆପଣଙ୍କୁ ।

—ମୋ'ର କିଛି ଅସୁବିଧା ହେଉନାହିଁ, କହିଲେ ଦୟାନିଧି ବାବୁ । ବରଂ, ଏତେ ଅଳ୍ପ ବୟସରେ ତୁ ଯେ ଏତେ ସାହସ କରି ପ୍ରେସଟିଏ କରିବାକୁ ଆଗେଇଚୁ ; ଆମ ସୋସାଇଟିର ପ୍ରତ୍ୟେକ ସଭ୍ୟ ତତେ ସାହାଯ୍ୟ କରିବାକୁ ପ୍ରସ୍ତୁତ । କେତେ ଟଙ୍କା ହେଲେ ଭଲ ପ୍ରେସଟିଏ କିଣି ପାରିବୁ ଭାବି ଚିନ୍ତି ଏଷ୍ଟିମେଟ୍ କରି ମତେ କହ । ତୁ ତ କମ୍ପାନୀ ଗୃହକରିବୁ ଇସ୍ତଫା ଦେଇଚୁ । ଲୋନ୍ ତୁ ନେଇ ପାରିବୁ ନାହିଁ । ବଳଭଦ୍ର ଭାଇ ତତେ ସାହାଯ୍ୟ କରିବାକୁ ଚାହାନ୍ତି ନାହିଁ, ମୁଁ ଜାଣେ । ତୋ'ର କେହି ଜଣାଶୁଣା ବନ୍ଧୁ ଯଦି ଆମ ସୋସାଇଟିର ମେମ୍ବର ଥାଆନ୍ତି, ମୁଁ ମୁଖ୍ୟାମି ହେଇ ତାଙ୍କୁ ଲୋନ୍ କରେଇ ଦେବି, ସେ ତତେ ଦେବେ । ମାସିକା କିସ୍ତିରେ ଶୁଝିଦବୁ । ଆମ ସୋସାଇଟିର ଛପାଛପି କାମ ଅନେକ । ସେଇଥିରେ ତୋ କରଜ ଶୁଝିଯିବ ।

ଜାତୀୟ କାର୍ଯ୍ୟ ପାଇଁ ଲକ୍ଷ୍ୟ ନିର୍ଦ୍ଦିଷ୍ଟ ଥିଲେ, ଅର୍ଥର ଅଭାବ ହୁଏ ନାହିଁ । ଏହା ଶ୍ରୀ ନାୟକଙ୍କ ଜୀବନରେ ପ୍ରମାଣିତ ହେଲା । ଦୟାନିଧିବାବୁ ସ୍ୱତଃପ୍ରବୃତ୍ତ ହୋଇ ନିଜେ ସବୁ ଦାୟିତ୍ୱ ବହନ କଲେ । ଶ୍ରୀ ନାୟକଙ୍କର ଜଣେ ପୁରାତନ ଗ୍ରାମବନ୍ଧୁ ନଟବର ପଟ୍ଟନାୟକଙ୍କୁ ଡକେଇ ଆଣି ଲୋନ୍ କରେଇ ଦେଲେ ସାତଶହ ପଚିଶ ଟଙ୍କା ।

ଏଇ ଟଙ୍କା ନେଇ କଲିକତାର ୩ ନମ୍ବର ମେଙ୍ଗୋଲେନରେ ଥିବା ଏକ ମେସିନାରି କମ୍ପାନୀରୁ ହାଫ୍ ଫୁଲସ୍କେପ୍ ସାଇଜର ଗୋଟିଏ ଗ୍ରେଟ୍ ଜାପାନୀ ଟ୍ରେଡ଼ଲ ମେସିନ କିଣି ଆଣି ଶ୍ରୀ ନାୟକ ଏକ "ପ୍ରେସ ମାଲିକ" ହେବାର ସୌଭାଗ୍ୟ ଭିତରେ ତାଙ୍କର ପ୍ରଥମ ବ୍ୟାବସାୟିକ ଜୀବନ ଆରମ୍ଭ କଲେ ଏବଂ ସେଇ 'ଆରମ୍ଭ' ଯେ ଏ ପର୍ଯ୍ୟନ୍ତ ତାଙ୍କର ଶେଷ ହୋଇନାହିଁ, ତା' ମଧ୍ୟ ସେ ଅତ୍ୟନ୍ତ ଗର୍ବର ସହିତ କହିବାକୁ ଯାଇ କବିତା ବି ଲେଖିଛନ୍ତି—

× × ଗ୍ରେଟ ମୋର ଛାପାଖାନା ନେଇ ଘୂରି ବୁଲେ
ବିଭିନ୍ନ ସହରେ ।
ଟାଟାରୁ କଟକ, କଟକରୁ ବାରିପଦା
ପୁଣି ଟାଟା, ରାଉରକେଲା
ମନଇଚ୍ଛା ଇଆଡ଼େ, ସିଆଡ଼େ
ବିଦ୍ରୋହୀ ମୁଁ ହାଡ଼େ ହାଡ଼େ (ଖୋଲାଝର୍କା)

ହଁ ସେ ବିଦ୍ରୋହୀ, ସେ ଅବ୍ୟବସ୍ଥିତ ଚିତ୍ତର ମଣିଷ ହେବା ସ୍ୱାଭାବିକ । କାରଣ ସେ ଯୋଉଠି ଅନ୍ୟାୟର ବିଭୀଷିକା ଦେଖେ, ସେଠିକି ଛୁଟିଯାଏ ପ୍ରତିବାଦ କରିବାପାଇଁ । ପ୍ରତିବାଦର ମାଧ୍ୟମ ହୁଏ ତା' ପାଇଁ ଖଣ୍ଡିଏ ପ୍ରେସ । ପ୍ରେସରୁ ପ୍ରକାଶ କରିବାପାଇଁ ଖଣ୍ଡେ ଇସ୍ତାହାର । ସେଇ 'ଇସ୍ତାହାର'ରେ ସେ ତା ଅଭିଯାନର ଲକ୍ଷ୍ୟ କଥା କୁହେ—

× × ମାଟି ତାଡ଼ି ଖଟି ଖାଇବାର ମୁଁ ହେଲି ଶ୍ରମିକ ପ୍ରାଣ
ସଂକୀର୍ଣ୍ଣ ବେଷ୍ଟନୀ ଡେଇଁ ମୁଁ ଯେ ସର୍ବବ୍ୟାପ୍ତ ପୃଥିବୀ ଦେଖିବି
ସେ ଦେଖା କି ପଣ୍ଡ ହେବ
କେତେ ଜଣ ସ୍ୱାର୍ଥକାମୀ କରିବେ ତା ବ୍ୟର୍ଥ ?
ମୁଁ ହେବି ବ୍ୟର୍ଥ ମନୋରଥ ?? × ×
ପ୍ରକୃତି ଉଦାର ଆଉ ଆକାଶ ପ୍ରସନ୍ନ
ମୋ' ହାତ ମୁଠାରେ ଏଇ କାର୍ଖାନାର ଉତ୍ପାଦନ
ସମୃଦ୍ଧିର ଗୁପ୍ତ ଗୃହ କାଠି
ମୁଁ ସେଇ ବାରବାଟୀ, ଶକ୍ତିର ପ୍ରସୂତି···
ସାର୍ଥକ ହେବି ମୁଁ ବିନେ, ଅଛି ମୋର ନିର୍ଦ୍ଧିତ ତାରିଖ
ପଡ଼ିବ ଅପେକ୍ଷା କରି, ଲେଖୁଚି ମୁଁ ପାର୍ଟିର ବିବୃତି ।

(ଖୋଲଫର୍ଦ୍ଦା—ନିର୍ଦ୍ଧିତ ତାରିକ)

ହଁ, ଶ୍ରୀ ନାୟକ ଜଣେ ବିଦ୍ରୋହୀ । ବିଦ୍ରୋହୀ ବା ବିପ୍ଳବୀ ସେ ହୋଇ ନାହାନ୍ତି ୨୩ ବର୍ଷରେ ମାର୍କସ୍ ବା ଏଙ୍ଗେଲ୍‌ଙ୍କ ସାହିତ୍ୟ ପଢ଼ି । ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ହୋଇ ପୁଞ୍ଜିପତିର ଏଷ୍ଟାବ୍ଲିଶ୍‌ମେଣ୍ଟ ଟାଟା କମ୍ପାନୀରେ ଖଣ୍ଡେ ଗୁଳାର ଗ୍ରହଣ କରି ସେ ଯେପରି ନିଷ୍ପେଷିତ ହୋଇଛନ୍ତି, ଗୋଟିଏ କବିତାରେ ମେହନତି ମଣିଷର ଫାଙ୍କୁଆ ଜୀବନ କଥା ଲେଖି, ଶୋଷଣ ଓ ଅତ୍ୟାଚାରର ନଗ୍ନଚିତ୍ର ଦେବାରୁ ତାଙ୍କ କାବ୍ୟିକ ଜୀବନର ସ୍ୱାଧୀନତା ଯେପରି ଲୁଣ୍ଠିତ ହୋଇଚି, ତାହାହିଁ ଶ୍ରୀ ନାୟକଙ୍କୁ ବାମପନ୍ଥୀ ଚିନ୍ତାଧାରାର ଜଣେ ଦୁର୍ଦ୍ଧାନ୍ତ ସଂଗ୍ରାମୀ ହେବାକୁ ବାଧ କରିଚି ଏବଂ ଏ ପର୍ଯ୍ୟନ୍ତ ତାଙ୍କର ୪୮ ଖଣ୍ଡ ଗ୍ରନ୍ଥରେ ତାଙ୍କ ବିଦ୍ରୋହର ଅନ୍ତଃସ୍ୱର ହୋଇଚି ।

× × ଏ ସମସ୍ତ ବିଦଳିବି
ହାଡ଼ଭଙ୍ଗା ଶୀତର ଏ ମାଘ
ରହିବନି ସବୁଦିନ ପାଇଁ ।
ମଣିଷର ରକ୍ତ ଖିଆ ବାଘ
ସେ ବି ଦିନେ ମରିବଇ
ମୋ'ର ଲଠି ମାଡ଼େ ।
× × ×
ଜାଣିଛି ସେ ଭେକ ଉପାସରେ
ତା' ପକ୍ଷରେ ଜାଳିଦେବା, କିଛି ହିଁ ବିଚିତ୍ର ନୁହେଁ
କାରଣ ତା' ମୁଷ୍ଟି ବଦ୍ଧ ହାତେ ବଜ୍ରର ଶପଥ ଥରେ···
କାରଣ ତା' ଶାଣିତ ଦୃଷ୍ଟିରେ ଶତ୍ୟର ବିଦ୍ୟୁତ୍ ଜଳେ
ସେମାନେ ମାଟିର ବୁକେ, ମହାଦ୍ରୁମ ଶାଖାର ପ୍ରଶାଖା
ବିଗନ୍ତର ବିପ୍ଳବ ପତାକା
(ଖୋଲାହର୍କା—ଉଜ୍ଜ୍ୱଳ ପତାକା)

୧୯୩୪ରୁ ୧୯୫୪ ପର୍ଯ୍ୟନ୍ତ ବିହାରରେ ରହିଥିବାବେଳେ ଶ୍ରୀ ନାୟକଙ୍କର ପାଞ୍ଚଟି କବିତା ପୁସ୍ତକ, ତିନୋଟି ନାଟକ, ପନ୍ଦରଟି ଉପନ୍ୟାସ ଏବଂ ପତ୍ର ପତ୍ରିକାରେ ପ୍ରକାଶିତ ବହୁ ଗଳ୍ପ ଓ ପ୍ରବନ୍ଧରେ ଅନ୍ୟାୟ ଏବଂ ଶୋଷଣ ବିରୋଧରେ 'ପ୍ରତିବାଦ' କରିବା ହିଁ ଥିଲା ତାଙ୍କ ଲେଖାର ଆହ୍ୱାନ । ପ୍ରତିବାଦ କରିବାପାଇଁ ନିମ୍ନ ମଧ୍ୟବିତ୍ତଶ୍ରେଣୀ ଆଗେଇ ଆସିବା ଉଚିତ୍ ବୋଲି ସେ ଏକ ନିର୍ଦ୍ଦିଷ୍ଟ ବାର୍ତ୍ତା ରଖିଯାଇଛନ୍ତି ତାଙ୍କର ସମସ୍ତ ଗ୍ରନ୍ଥରେ ।

୧୯୫୪ରେ କେନ୍ଦ୍ର ସରକାରଙ୍କ ପକ୍ଷରୁ ଫଜଲ ଅଲିଙ୍କ ଅଧ୍ୟକ୍ଷତାରେ ସୀମା ନିର୍ଦ୍ଧାରଣ କମିଶନ ସିଂହ ଭୂମିକୁ ଆସିବା ପୂର୍ବରୁ ଶ୍ରୀ ନାୟକଙ୍କ ପ୍ରେସ ଘର ଖାନତଲାସ କଲେ ବିହାର ପୁଲିସ । ବିନା ଓ୍ୱାରେଣ୍ଟରେ ଥାନାକୁ ଡକେଇ ନେଇ କୋଡ଼ିଏ ଦିନ ବ୍ୟାପୀ ଥାନା ଲକ୍‌ଅପରେ ନଜରବନ୍ଦୀ ଭାବେ ଶ୍ରୀ ନାୟକଙ୍କୁ ଅଟକ କରି ରଖିଲେ ।

ଏ' ସମ୍ବାଦ ଦୈନିକ 'ସମାଜ'ର ୧୪ ସେପ୍ଟେମ୍ବର ୧୯୫୪ ତାରିଖ ସଂଖ୍ୟାରେ ପ୍ରକାଶ ପାଇବାରୁ, ରୁଷିଆର ମିଗ୍ରିସେସନ୍ କ୍ୟାମ୍ପରେ

ଯୁଦ୍ଧବନ୍ଦୀମାନଙ୍କୁ ମେଣ୍ଡାଲ ଟର୍ଚ୍ଚର କଲପରି ଶ୍ରୀ ନାୟକଙ୍କୁ ମଧ୍ୟ ନିର୍ଯ୍ୟାତନା ଦିଆଗଲା ।

ଏ ସମ୍ପର୍କରେ ଓଡ଼ିଶାର ତତ୍କାଳୀନ ନିର୍ବାଚିତ ଲୋକପ୍ରତିନିଧି ସରକାରଙ୍କୁ ବହୁ ଚିଠିପତ୍ର ଲେଖାଗଲେ ମଧ୍ୟ, ସେମାନେ କୌଣସି ପ୍ରତିକାର କରିବାକୁ ସାହସ କଲେ ନାହିଁ ବିହାର ସରକାରଙ୍କ ବିରୁଦ୍ଧରେ । ସ୍ୱାଧୀନତା ପ୍ରାପ୍ତି ପରଠୁ ସମଗ୍ର ବହିର୍ନାଞ୍ଚଳରେ ଓଡ଼ିଆମାନଙ୍କ ଉପରେ ବଙ୍ଗଳା, ଆନ୍ଧ୍ର, ମଧ୍ୟପ୍ରଦେଶ ଏବଂ ବିହାର ସରକାରଙ୍କ ଅତ୍ୟାଚାର ବା ଆକ୍ରମଣର ଏକ ନୀରବ ଦ୍ରଷ୍ଟାଭାବେ କେବଳ ଓଡ଼ିଶାର ଲୋକପ୍ରତିନିଧି-ମାନେ ଏକ ଖାରୁ ନେତୃତ୍ୱର ପରିଚୟ ଦେଇଛନ୍ତି ସିନା, ଗୋଟିଏ ପାଦ ଆଗକୁ ବଢ଼ି, କେନ୍ଦ୍ର ସରକାରଙ୍କୁ ମୁହାଁମୁହିଁ ପଚାରିବାକୁ ଏତେ ଟିକିଏ ସତ୍‌ସାହାସ ଦେଖେଇ ପାରି ନାହାନ୍ତି, ଓଡ଼ିଆ ଜାତିର ବହିର୍ନାଞ୍ଚଳ ସମସ୍ୟାର ସମାଧାନ କାହିଁକି ହେଲା ନାହିଁ ଏ ପର୍ଯ୍ୟନ୍ତ ?

୧୯୫୪ରେ ବ୍ରିଟିଶ ଶାସନ ନଥିଲା । ସାତବର୍ଷ ପୂର୍ବରୁ ଭାରତ ସ୍ୱାଧୀନ ହୋଇ ସାରିଥିଲା । ତଥାପି, ପ୍ରାଦେଶିକତାର କୁତ୍ସିତ ରୂପ କେତେ ଭୟଙ୍କର ହୋଇପାରେ, ତା'ର ପ୍ରମାଣ ପାଇଥିଲେ ଆଖି ସାମ୍ନାରେ ଶ୍ରୀ ନାୟକ । ବାଧ୍ୟ ହୋଇ ସେ ତାଙ୍କ ପ୍ରେସ ବ୍ୟବସାୟକୁ ସ୍ଥାନାନ୍ତରିତ କରିଥିଲେ ରାଉରକେଲା ।

ରାଉରକେଲାରେ ୧୯୫୪ ମସିହାର ରଥଯାତ୍ରା ଦିନରେ ସେ ତାଙ୍କ ପ୍ରେସ କାର୍ଯ୍ୟର ଶୁଭାରମ୍ଭ କଲେ । ନାଁ ରଖିଲେ, 'ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ' ଏଠାରେ ରହିଲେ ମାତ୍ର ୧୩ ବର୍ଷ । ୧୯୫୪ ଠାରୁ ୧୯୬୭ ପର୍ଯ୍ୟନ୍ତ କାର୍ଯ୍ୟକାଳ ଭିତରେ—କେନ୍ଦ୍ର ସରକାରଙ୍କ ପକ୍ଷରୁ ପବ୍ଲିକ୍ ସେକ୍ଟରରେ ଆରମ୍ଭ ହୋଇଥିବା ଷ୍ଟିଲ୍‌ପ୍ଲାଣ୍ଟରେ ଓଡ଼ିଆ ଶ୍ରମିକ, କିରାଣୀ ଏବଂ ଉଚ୍ଚପଦସ୍ଥ କର୍ମଚାରୀଙ୍କ ନିଯୁକ୍ତି କ୍ଷେତ୍ରରେ, କମ୍ପାନୀର ମାନେଜମେଣ୍ଟରେ ଥିବା ଅଣଓଡ଼ିଆ ମାନେଜିଂ ଡିରେକ୍ଟର ଏବଂ ତାଙ୍କ ଗୋଷ୍ଠୀ ସଳସୂତ୍ରୀ ହୋଇ, ଉଦ୍ଦେଶ୍ୟମୂଳକ ଭାବେ, ଓଡ଼ିଆ ମାରଣ ନୀତିର ଯେଉଁ ଯଥେଚ୍ଛାଚାର ଚଳେଇଲେ, ତା'ର ଦୃଢ଼ ବିରୋଧ କଲେ ଶ୍ରୀ ନାୟକ । ତାଙ୍କଦ୍ୱାରା ପ୍ରକାଶିତ ଇଂରାଜୀ ସାପ୍ତାହିକ 'ରାଉରକେଲା ପୋଷ୍ଟ' ଏବଂ ତା'ର ଓଡ଼ିଆ ସଂସ୍କରଣ

'ଆଜର ଡାକ' ପତ୍ରିକାରେ । ଏ ସମ୍ପର୍କରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ କେନ୍ଦ୍ର ସରକାରଙ୍କୁ ମୁହାଁମୁହିଁ ଚ୍ୟାଲେଞ୍ଜ ନଦେବା ଯେ ତାଙ୍କ ଦୁର୍ବଳ ନେତୃତ୍ୱର ପରିଚୟ, ଏହା ମଧ୍ୟ ଖୋଲା ଖୋଲି ଭାବେ ଅଭିଯୋଗ କଲେ ଶ୍ରୀ ନାୟକ ।

କେବଳ ସମ୍ବାଦପତ୍ର ପ୍ରକାଶନ ନୁହେଁ, ଏଇ ସର୍ବଭାରତୀୟ ସହରରେ ଓଡ଼ିଆ ଜାତିର ଭାଷା, ସାହିତ୍ୟ ଏବଂ ସଂସ୍କୃତି, ବିଭିନ୍ନ ପ୍ରଦେଶରୁ ଆସିଥିବା ଅଣଓଡ଼ିଆ ଶ୍ରମିକ, ଠିକାଦାର ଏବଂ ବ୍ୟବସାୟୀଙ୍କୁ କିପରି ପ୍ରଭାବିତ କରିବ, ସେଥିପାଇଁ 'ରାଉରକେଲା ଏକାଡେମୀ' ପ୍ରତିଷ୍ଠା କଲେ । ତା'ର ମୁଖପତ୍ର ରୂପେ ପ୍ରକାଶ କଲେ 'ନବପତ୍ର' । ଏଇ ନବପତ୍ର ବିଗତ ୩୦ ବର୍ଷ ଧରି ଧାରାବାହିକ ଭାବେ ପ୍ରକାଶ ପାଉଥିବା ଓଡ଼ିଶାର ସାହିତ୍ୟ ପତ୍ରିକା ପ୍ରକାଶନ ଦିଗରେ ଏକ ଆଦର୍ଶସ୍ଥାନୀୟ ପତ୍ରିକା— ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ଏବଂ ଏଇ ଅନୁଷ୍ଠାନ ପକ୍ଷରୁ 'ନୀଳ ନାଟକ ଉତ୍ସବ' ବିଗତ ୧୬ ବର୍ଷ ଧରି ଅନୁଷ୍ଠିତ ହେଉଥିବା ଏକ ସାଂସ୍କୃତିକ ପରମ୍ପରାର ଇତିହାସ ସୃଷ୍ଟି କରି ଚାଲିଛି—ଏହା ମଧ୍ୟ ଗର୍ବର ସହିତ କୁହାଯାଇପାରେ ।

ଏଇ ଇସ୍ପାତ ସହରରେ ଅବସ୍ଥାନ ବେଳେ—ଖଟିଖିଆ ମଣିଷର ଦୁଃଖ, ଦୈନ୍ୟ, ଅଭାବ—ଅସୁବିଧାର ଚିତ୍ର ଦେବାରେ ଶ୍ରୀ ନାୟକ ତାଙ୍କର ଔପନ୍ୟାସିକ କୃତିତ୍ୱର ଏକ ମନୋଜ୍ଞ ସ୍ୱାକ୍ଷର ରଖିଛନ୍ତି ଅନେକ ଗୁଡ଼ିଏ ପୁସ୍ତକରେ । ସେଥିମଧ୍ୟରୁ ସର୍ବହରା, ହା'ରେ ଦୁର୍ଭାଗାଦେଶ, ସେ ମରିନାହିଁ, ରକ୍ତଝରା ଭୋ'ର, ସେଇ ଆଲୁଅ ପାଇଁ, ନୁହେଁ ସେ ପ୍ରେମିକା ପ୍ରଭୃତି ଉପନ୍ୟାସ ସମ୍ପର୍କରେ କୁହାଯିବା ବେଳେ, ରାଉରକେଲା ସହରରେ ବସବାସ କରୁଥିବା ଜନସାଧାରଣଙ୍କ ଚଳଚଳନ, କର୍ମ କୁଶଳତା ଏବଂ ଜୀବନ ଯନ୍ତ୍ରଣାକୁ ନେଇ ଲେଖା ଯାଇଥିବା ଉପନ୍ୟାସ 'ମୋ' ସ୍ୱପ୍ନର ସହର' ତା'ର କଥାବସ୍ତୁ ଏବଂ ରଚନାଶୈଳୀ ପାଇଁ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ଆୱାର୍ଡ଼ ପାଇଥିବା ଏକ ପ୍ରଶଂସାର କଥା ବୋଲି ନିର୍ଦ୍ଧିଧାରେ କୁହାଯାଇପାରେ ।

ଶ୍ରୀ ନାୟକ ତାଙ୍କର ଅଭିନେତା ଜୀବନର କଳା ନୈପୁଣ୍ୟକୁ ଦୁଇଟି ସାମ୍ୟବାଦୀ ନାଟକ 'ରକ୍ତପତାକା' (ଜମିଦାର) ଏବଂ ଲାଲ

ଗୃବୁକ'ର ଅଗ୍ନିଳ ସଂଳାପରେ ଯେପରି ପରିପୁଷ୍ଟ କରିଛନ୍ତି ତାହା ମଧ୍ୟ ଓଡ଼ିଶାର ଦର୍ଶକମଣ୍ଡଳୀଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ଏବଂ ତାଙ୍କର ସାମାଜିକ ନାଟକ 'ଧର୍ମପତ୍ନୀ'ରେ ସାମନ୍ତବାଦୀ ମନୋଭାବକୁ ଲାଞ୍ଛିତ କରି ନିମ୍ନ ମଧ୍ୟବିତ୍ତ ସମ୍ପ୍ରଦାୟର ଅଭାବୀ ଯୁବକ 'ମନୋଜ' ମୂର୍ତ୍ତିରେ ବିଦ୍ରୂପ ବ୍ୟଞ୍ଜକ ଡାଇଲଗ୍‌ରେ ଯେପରି କୁହାଇଛନ୍ତି ତାହା ସେ ଶ୍ରୀ ନାୟକଙ୍କ ନାଟ୍ୟକାର ଶୈଳୀର ମୌଳିକ ପ୍ରତିଭାକୁ ଉନ୍ମୋଚିତ କରିଛି ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ସାମାଜିକ ନାଟକ ବ୍ୟବସାୟୀ ରଙ୍ଗମଞ୍ଚ ଅନ୍ନପୂର୍ଣ୍ଣା ଥିଏଟର 'ଏ' ଗ୍ରୁପଠାରୁ ପାରିଶ୍ରମିକ ପାଇବାରେ ଶ୍ରୀ ନାୟକ ହେଉଛନ୍ତି ଓଡ଼ିଶାର ପ୍ରଥମ ନାଟ୍ୟକାର, ଏହା ମଧ୍ୟ ଏଠାରେ କୁହାଯାଇପାରେ ବିଶିଷ୍ଟ ଗୀତିକାର ଭାବେ ଶ୍ରୀ ନାୟକ ତାଙ୍କର ଉଚ୍ଚ ପ୍ରଶଂସିତ 'ଗଜଲ ଝର୍ଣ୍ଣା' ପୁସ୍ତକରେ ଏକାଧାରରେ ଜଣେ ଦୁର୍ମୁଖ ପ୍ରେମିକ ଏବଂ ଦୁରନ୍ତ ଦେଶପ୍ରେମୀ ଭାବେ ଫୁଲର ବ୍ୟଥା ଏବଂ ଜ୍ୱଳନ୍ତ ଶିଖାକୁ ମନନଶୀଳତାର କାରୁକର୍ମରେ ଅନୁରଞ୍ଜିତ କରି ଯେପରି କାବ୍ୟିକ ଛନ୍ଦରେ ପ୍ରକାଶ କରିଛନ୍ତି, ତାହା ମଧ୍ୟ ଏକ ଅନନ୍ୟ ସାଧାରଣ ପ୍ରଚେଷ୍ଟା ।

ଗୀତିକବିତା ରଚନାରେ ଶ୍ରୀ ନାୟକଙ୍କ ସିଦ୍ଧ ହସ୍ତର ପ୍ରମାଣ ମିଳିଛି ସଙ୍ଗୀତ ରୂପକ (Musical feature) 'ଆମରି ଗାଁ'ରେ ୧୯୮୩ରେ । ଦିଲ୍ଲୀର 'କେନ୍ଦ୍ର ଆକାଶବାଣୀ' ପକ୍ଷରୁ ଏହା ନେସନାଲ ହୁକ୍‌ଅପ୍‌ରେ ଏକବର୍ଷବ୍ୟାପୀ ବିଭିନ୍ନ ସମୟରେ ୮୦ଟି କେନ୍ଦ୍ରରୁ ପ୍ରସାରିତ ହୋଇଥିଲା । ଏଇ ସଙ୍ଗୀତରୂପକ ପାଇଁ ଶ୍ରୀ ନାୟକ A I R. ପକ୍ଷରୁ ଆୱାର୍ଡ ପାଇ ସମ୍ମାନିତ ହୋଇଥିବା କଥା ଉଲ୍ଲେଖ କଲାବେଳେ, ଗୋଟିଏ ବିଶେଷ ଘଟଣା ସମ୍ପର୍କରେ କୁହାଯାଇପାରେ । ଭାରତବର୍ଷ ସ୍ୱାଧୀନ ହେବା ପରଠୁ ଏ ପର୍ଯ୍ୟନ୍ତ ସର୍ବଭାରତୀୟ ସ୍ତରରେ 'ସଙ୍ଗୀତ ରୂପକ' ପାଇଁ ଆୱାର୍ଡ ପାଇଥିବା କୌଣସି ମ୍ୟୁଜିକାଲ ଫିଚର ଇଣ୍ଟରନ୍ୟାସନାଲ ପ୍ରତିଯୋଗିତା ପାଇଁ ଭାରତ ସରକାରଙ୍କ ପକ୍ଷରୁ ପଠାଯାଇ ନାହିଁ, ଏକଥା କେନ୍ଦ୍ର ମନ୍ତ୍ରୀ ଶ୍ରୀ ଭଗତ, ଆୱାର୍ଡ ଦେଲାବେଳେ ତାଙ୍କ ଅଭିଭାଷଣରେ ସଗର୍ବେ କହି ଶ୍ରୀ ନାୟକଙ୍କୁ ଅଭିନନ୍ଦିତ କରିଥିଲେ । ଏଇ ସଙ୍ଗୀତ ରୂପକର ରଚୟିତା କେବଳ ନଥିଲେ ଶ୍ରୀ

ନାୟକ, ଏଥିର ଆବୃତ୍ତି ମଧ୍ୟ କରିଥିଲେ । କଟକ ଆକାଶବାଣୀର ସଙ୍ଗୀତ ଶିଳ୍ପୀ ଶ୍ରୀ ଅକ୍ଷୟ ମହାନ୍ତି ଏହାର ପ୍ରଡ୍ୟୁସର ଥିଲେ ।

ଏଇ ସୁଯୋଗରେ ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇପାରେ । କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ 'ଗାଲିବ୍' ଶତବାର୍ଷିକୀ ପାଳନ ଅବକାଶରେ ଗାଲିବଙ୍କ ଉର୍ଦ୍ଦୁ ଗଜଲରୁ ନିର୍ବାଚିତ କେତୋଟି ଗଜଲର ଇଂରାଜୀ ଅନୁବାଦ ଗ୍ରନ୍ଥର ଓଡ଼ିଆ ଅନୁବାଦ କାର୍ଯ୍ୟଟି, ଏକାଡେମୀ, ଶ୍ରୀ ନାୟକଙ୍କୁ ଅର୍ପଣ କରିବା ଦ୍ୱାରା, ଓଡ଼ିଶାର ଅଗଣିତ କବିଙ୍କ ଭିତରେ ଶ୍ରୀ ନାୟକଙ୍କର କାବ୍ୟିକ ପ୍ରତିଭାକୁ ଯେ ଅଯାଚିତ ଭାବେ ସ୍ୱୀକୃତି ଦେଇଛି ଏହା ମଧ୍ୟ ପ୍ରମାଣିତ ହୋଇଛି ।

ଏଇ ପରିପ୍ରେକ୍ଷୀରେ ଯୋଉ ପ୍ରଶ୍ନଟି ଗୁରୁତ୍ୱସହ ଏଠାରେ ପଚରାଯାଇପାରେ, ତା' ହେଲା—କବି ଶ୍ରୀ ନାୟକ ରାଜ୍ୟସ୍ତରରେ ଏବଂ ସର୍ବଭାରତୀୟ ସ୍ତରରେ ଯେ ବାରମ୍ବାର ସମ୍ମାନିତ ହୋଇଛନ୍ତି ତା' କ'ଣ— ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ କେବଳ ତାଙ୍କ ସ୍ୱାକ୍ଷର ରଖିଛନ୍ତି ବୋଲି ନା ତାଙ୍କ ଲେଖାର ବିଷୟବସ୍ତୁ, ଓଡ଼ିଶାର ସାମାଜିକ, ସାଂସ୍କୃତିକ ଏବଂ ରାଜନୈତିକ ଜୀବନକୁ କିଛି ଦିଗ୍‌ଦର୍ଶନ ଦେବାରେ ସକ୍ଷମ ହୋଇଛି ବୋଲି !!

ଏହାର ଉତ୍ତର ଅତ୍ୟନ୍ତ ସହଜ । କାରଣ ଶ୍ରୀନାୟକଙ୍କ ସାହିତ୍ୟ କୃତି ଏବଂ କୃତିତ୍ୱ ଉପରେ ଓଡ଼ିଶାର ଦୁଇଟି ସାଂସ୍କୃତିକ ଅନୁଷ୍ଠାନ "ଏକାମ୍ର ଥିଏଟର୍ସ" ଭୁବନେଶ୍ୱର ଏବଂ "ପ୍ରତିଭା ପୂଜା ପରିଷଦ" କଟକ ପକ୍ଷରୁ ପ୍ରକାଶିତ ଅଭିନନ୍ଦନ ଗ୍ରନ୍ଥ – ଓଡ଼ିଶାର ପ୍ରତିଷ୍ଠିତ ଲେଖକ, ସମୀକ୍ଷକ ଏବଂ ପାଠକମାନଙ୍କ ଠାରୁ ଲେଖା ସଂଗ୍ରହ କରି ଯାହା ଲୋକଲୋଚନକୁ ଆଣିଛି, ସେଥିରୁ ପ୍ରମାଣିତ ହୁଏ—ଶ୍ରୀ ନାୟକ ଜଣେ ଅନନ୍ୟ ସାଧାରଣ ଆଦର୍ଶବାଦୀ ଲେଖକ । ତାଙ୍କର ପ୍ରତ୍ୟେକ ବହିରେ ଜନସାଧାରଣଙ୍କ ପାଇଁ କିଛି ନିର୍ଦ୍ଦିଷ୍ଟ ବାର୍ତ୍ତା ରହିଛି ଏବଂ ତାଙ୍କର ସେଇ ବାର୍ତ୍ତାକୁ କେବଳ ଶବ୍ଦର ହେରଫେର୍ ଲେଖି ସେ ତାଙ୍କ ସାହିତ୍ୟିକ କର୍ତ୍ତବ୍ୟ ଶେଷ କରି ନାହାନ୍ତି—ସେଇ ବାର୍ତ୍ତାର ସଫଳ ରୂପାୟନ ପାଇଁ ଏକ ଜାଗ୍ରତ ସୈନିକ ପରି ସେ କର୍ତ୍ତବ୍ୟନିଷ୍ଠ ରହିଛନ୍ତି ଜୀବନବ୍ୟାପୀ । ତାଙ୍କ

ସମଧର୍ମୀମାନଙ୍କୁ ଆହ୍ୱାନ ଦେଇ ଏକଯୁକ୍ତ କରିବାରେ ସେ ଏପର୍ଯ୍ୟନ୍ତ ବି ରହିଛନ୍ତି ସାରସ୍ୱତ ଆନ୍ଦୋଳନର ଅଗ୍ରଭାଗରେ ।

ଲକ୍ଷ୍ମୀଧର ନାୟକଙ୍କ ଅଧିକାଂଶ ଉପନ୍ୟାସର ଭିତ୍ତିଭୂମି—ସ୍ୱାଧୀନତା ପ୍ରାପ୍ତି ପରର ଓଡ଼ିଶା ଏବଂ ସେ ସବୁର କଥାବସ୍ତୁରେ ପ୍ରକାଶ ପାଇଛି—ଓଡ଼ିଶାର ବହୁମୁଖୀ ବିକାଶର ଆରମ୍ଭ ସମୟର ସମସ୍ୟା ଦ୍ୱନ୍ଦ୍ୱ ଏବଂ ସମାଧାନର ସଙ୍କେତ ସବୁଗୁଡ଼ିକରେ ଏକ ରୁଦ୍ଧ ଆବେଗର ପରିଭାଷା ମଧ୍ୟ ଶୁଣିବାକୁ ମିଳେ । ଅର୍ଥାତ୍ ଶିକ୍ଷା ମାଧ୍ୟମରେ ଓଡ଼ିଶା ସହିତ ଅନ୍ୟରାଜ୍ୟମାନଙ୍କର ଯେଉଁ ତୁଳନାତ୍ମକ ଚିନ୍ତ ବୁଦ୍ଧିଜୀବୀଙ୍କ ମନରେ ଉଦ୍‌ଭାସିତ ହୋଇଥିଲା ତାହାହିଁ ଆଲୋକିତ କରିଥିଲା କଥା ଶିଳ୍ପୀଙ୍କ ମନକୁ ଏବଂ ଏକ ବ୍ୟଗ୍ର ଆତୁରତା ଓ ଅଧୈର୍ଯ୍ୟଭାବେ ମଧ୍ୟ ଆକ୍ରମଣ କରିଥିଲା ଶ୍ରୀ ନାୟକଙ୍କ ନିର୍ମାଣ ସ୍ୱପ୍ନକୁ । ଓଡ଼ିଶା କେବେଣି ଏକ ସମୃଦ୍ଧ ରାଜ୍ୟରେ ପରିଣତ ହେବ ଏବଂ କେତେ ଚଞ୍ଚଳ ଏହା ହୋଇ ପାରିବ ଏଇ ବ୍ୟାକୁଳତା ତାଙ୍କର କାହାଣୀ ଓ ଚରିତ୍ରର ମୂଳମନ୍ତ୍ର । ପାରମ୍ପରିକ ନୈତିକତା ଏବଂ ବ୍ୟକ୍ତିବାଦ, ପୂର୍ଣ୍ଣତାର ଆତ୍ମସଙ୍ଗଠନ ମଧ୍ୟରେ ଯେଉଁ ସଂଘାତ, ସ୍ୱାଭାବିକ ଭାବରେ ଓଡ଼ିଶାର ଜନଜୀବନ ଭିତରେ ପ୍ରବେଶ କରିଥିଲା, ତାର ଅନୁଭୂତି ମଧ୍ୟ ଶ୍ରୀ ନାୟକଙ୍କ ଗଳ୍ପ, ଉପନ୍ୟାସ, ନାଟକ ଓ କବିତାରେ ପରିଲକ୍ଷିତ ହୁଏ । ଅନ୍ୟ ଭାଷାରେ ଶ୍ରୀ ନାୟକଙ୍କ ସମଗ୍ର ରଚନାରେ, ଆଧୁନିକତାର ବଳୟ ଭିତରକୁ ପ୍ରବେଶ କରୁଥିବା ଏକ ଜାତିର ନୈତିକ ଦ୍ୱନ୍ଦ୍ୱ ଏବଂ ସାମାଜିକ ଜାଗରଣଜନିତ ଜନ୍ମଯନ୍ତ୍ରଣାର ଜ୍ୱାଳା ଏକ ଅଭିମାନୀ ଏବଂ କାବ୍ୟିକ ପରିବେଶରେ ଦେଖାଯାଏ ।

ଏଇ ପରିବେଶ ମୁଖ୍ୟତଃ ତିନୋଟି ସ୍ରୋତରେ କଲ୍ଲୋଳିତ ହୋଇଛି । ଜାତୀୟତା, ପ୍ରେମ ଏବଂ ପ୍ରତିବାଦ । ପୁଣି ଏଇ ସ୍ରୋତ ପ୍ରାୟ ଏକମୁଖୀ ଏବଂ ପରସ୍ପରର ପରିପୂରକ ହୋଇ ପ୍ରବହମାନ ।

ଶ୍ରୀ ନାୟକଙ୍କ ଉପନ୍ୟାସର ମୁଖ୍ୟ ଚରିତ୍ରଗୁଡ଼ିକ କେହି ଜଣେ ହେଲେ 'ପ୍ରେମ'ର ପୂର୍ଣ୍ଣତା ପାଇ ନାହାନ୍ତି, ସଫଳତାର ସୂର୍ଯ୍ୟୋଦୟ ଦେଖି ନାହାନ୍ତି । ଅର୍ଥାତ୍ ବିବାହ ମାଙ୍ଗଳିକରେ ଶ୍ରୀ ନାୟକଙ୍କ ଉପନ୍ୟାସ

ସମ୍ଭବ ହୁଏ ନାହିଁ । ପ୍ରେମ ଏଠି ପ୍ରାଣ ପ୍ରାଚୁର୍ଯ୍ୟର ସ୍ପନ୍ଦନ । ପ୍ରେମ ଏଠି ଜୀବନକୁ ଭଲ ପାଇବାର 'ପ୍ରତୀକ' । ତେଣୁ ତା'ର ସଫଳତା ରୂପାୟିତ ହୋଇଛି 'ପ୍ରତିବାଦ'ରେ ।

ଶ୍ରୀ ନାୟକଙ୍କ ଅଧିକାଂଶ ଲେଖାରେ ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ୩୦ ବର୍ଷ ଓଡ଼ିଶାର ଚିତ୍ର ଖୁବ୍ ସ୍ପଷ୍ଟ । ଶ୍ରମଜୀବୀର ସଂଘର୍ଷ ବୁଦ୍ଧିଜୀବୀର ହତାଶା, ଆଦର୍ଶବାଦୀର ପରାଜୟ ଏବଂ ନୈତିକତାର ଅଧଃପତନ, ନୂଆ ସଭ୍ୟତାର ଆଙ୍ଗିକ ଭିତରେ ନୈରାଶ୍ୟର ଯେଉଁ ମନସ୍ଥିତି ସୃଷ୍ଟି କରିଛି, ସେଇ ମନସ୍ଥିତି ହିଁ ପାଠକକୁ ଅଭିଭୂତ କରେ । ତାଙ୍କ ଉପନ୍ୟାସର ନାୟକ, ସେ ଜୟେନ୍ ହେଉ ବା ସୁବ୍ରତ ହେଉ, ଅବହିତ ନୈତିକ ପବିତ୍ରତା ଏବଂ ଆତ୍ମସାଧନା ବର୍ବରତାର ସଂଘାତରେ ଜର୍ଜରିତ ! ଓଡ଼ିଶାର ଅନଗ୍ରସରତା ଏବଂ ଓଡ଼ିଆ ଜାତିର ବିଗତ ଶହେ ବର୍ଷର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ସମସ୍ୟାକୁ ସମାଧାନ କରିବା ଦିଗରେ ସ୍ୱାଧୀନ ଭାରତର କେନ୍ଦ୍ର ସରକାର ଏତେ ଟିକେ ସହାନୁଭୂତିଶୀଳ ନ ହେବାର ଦେଖି, ଗାନ୍ଧୀଙ୍କ 'ଅହିଂସା ତତ୍ତ୍ୱ' ବା ନେହେରୁଙ୍କ 'ସମାଜବାଦ' କୌଣସିଟିକୁ ସେ ଗୁରୁତ୍ୱ ଦେବାର ପ୍ରୟୋଜନ ମନେ କରନ୍ତି ନାହିଁ । ତାଙ୍କ ମତରେ ଭାରତବର୍ଷର ନେତାମାନଙ୍କ 'ଗଣତନ୍ତ୍ରବାଦ' ଏକଛତ୍ରବାଦର ଏକ ବୀଭତ୍ସ ପ୍ରହସନ ଏବଂ ଗଡ଼ିବାର ନିଶାରେ, ଭାରତର ନବେ କୋଟି ଲୋକଙ୍କ ଭିତରେ ଯଦି ଜଣେ କେହି ସ୍ୱପ୍ନ ଦେଖୁଥାଏ 'ରାମରାଜ୍ୟ' ପ୍ରତିଷ୍ଠା କରିବାକୁ, ସେ ତେବେ ନିଶ୍ଚିତ ଭାବେ, ଏପରି ଏକ ଅଭିନବ ବିପ୍ଳବର ପରିକଳ୍ପନା କରିବ, ଯୋଉଠି 'ବିପ୍ଳବ' ଏକ ଗୋଳା, ବାରୁଦ, ବନ୍ଧୁକର ବିପ୍ଳବ ନ ହୋଇ, ହେବ ଏକ ସମଷ୍ଟିଗତ 'ପ୍ରତିବାଦ'ର ଅଶ୍ରୁତ ପୂର୍ବ ଅଭିଯାନ ।

●

# ତପସ୍ୱୀ ନବକିଶୋର

ଡଃ ବିଜୟାନନ୍ଦ ସିଂହ

ଭାରତବର୍ଷରେ ସ୍ୱାଧୀନତା ଆନ୍ଦୋଳନ—ଗାନ୍ଧିଜୀଙ୍କ ନେତୃତ୍ୱରେ ବିରାଟ ପଟ୍ଟୁଆର ଭାରତର ମୁକ୍ତି ପାଇଁ । ଗାନ୍ଧିଜୀଙ୍କ ବିରାଟ ବ୍ୟକ୍ତିତ୍ୱ ତରୁଣ ଓ ଯୁବକମାନଙ୍କୁ ବେଶ୍ ସେତେବେଳେ ଆକୃଷ୍ଟ କରିଥିଲା । "ଦେଶରୁ ବିଦେଶୀ ଶକ୍ତିକୁ ତଡ଼ିବାକୁ ହେବ"—ଏ ବଜ୍ର ଶପଥ ଗ୍ରହଣ କରିଥିଲେ ତତ୍କାଳୀନ ଛାତ୍ର ଓ ଯୁବକ । ସେମାନେ ଚିନ୍ତା କରିଥିଲେ ନିଜର ଭବିଷ୍ୟତ ନୁହେଁ ଦେଶ ଓ ଜାତିର ଭବିଷ୍ୟତକୁ ସମୃଦ୍ଧ କରିବାକୁ ହେବ । ଦାରିଦ୍ର୍ୟ, ଦୁଃଖ, ଯନ୍ତ୍ରଣା, ତାଡ଼ନା ପୁଣି ପରିବାରର ସମସ୍ୟାକୁ ଭ୍ରୂକ୍ଷେପ ନକରି ଦେଶର ବିରାଟ ସମ୍ଭାବନାକୁ ସାକାର କରିବାକୁ ହେବ । ଭାରତବର୍ଷର ଆଗଣିତ ମୁକ୍ତିକାମୀ ଜନଗଣଙ୍କ ସ୍ୱପ୍ନକୁ ସାର୍ଥକ କରିବାକୁ ହେବ—ଏ ଶପଥ ଥିଲା ଭାରତବର୍ଷର ସେ ସମୟର ତରୁଣର······ ଯୁବକର······ଛାତ୍ରର······। ଏହିପରି ସେଦିନ ଜଣେ ତରୁଣ, ଛାତ୍ର ଥିଲେ—ଶ୍ରୀ ନବ କିଶୋର ପଟ୍ଟନାୟକ । ଦେଶ ଓ ଜାତିର ସମୃଦ୍ଧି ପାଇଁ ନବ କିଶୋରଙ୍କ ଜୀବନ ଉତ୍ସର୍ଗୀକୃତ । ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତ ଏ ଦେଶର ବିକାଶ ପାଇଁ ନିବେଦିତ । ସ୍ୱାଧୀନତା ପୂର୍ବରୁ ଦେଶ ମୁକ୍ତି ପାଇଁ ଏବଂ ସ୍ୱାଧୀନତା ପରେ ସମ୍ପୂର୍ଣ୍ଣ ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରି ନୂତନ ଭାରତ ଗଠନରେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି । ସେ ନୀରବକର୍ମୀ, ସେ ଦେଶଭକ୍ତ । ପୁଣି ଏକାଧାରରେ ନବକିଶୋର କଳାକାର, ସଙ୍ଗଠକ, ନାଟ୍ୟକାର, ଶିଳ୍ପୀ । ଯଥାର୍ଥରେ ନବକିଶୋରଙ୍କ ଜୀବନ ଏକ ତପସ୍ୱୀର ଜୀବନ । ତାଙ୍କର ତପସ୍ୟା ଭାରତବର୍ଷର ସାମଗ୍ରିକ

ବିକାଶ ପାଇଁ । ଜଣେ ସଚ୍ଚୋଟ ଗାନ୍ଧିବାଦୀ ମଣିଷଟି କିପରି ମାତୃଭୂମିକୁ, ମଣିଷ ଜାତିକୁ ଗଭୀର ଭାବେ ଭଲ ପାଆନ୍ତି—ତାହା ନବକିଶୋରଙ୍କ ଜୀବନକୁ ଅନୁଧ୍ୟାନ କଲେ ଆମେ ହୃଦୟଙ୍ଗମ କରିପାରିବା । ଜୀବନ ତାଙ୍କର ସାଧନାମୟ ।

## ଜୀବନ ଗୀତ :

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ ଶ୍ରୀ ନବକିଶୋର ପଟ୍ଟନାୟକ ୧୩୧୬ ସାଲ ଫାଲଗୁନ ମାସ (ଇଂରାଜୀ ୧୯୦୯ ମସିହା ମାର୍ଚ୍ଚ ମାସ)ରେ ଖୋର୍ଦ୍ଧା ଜିଲ୍ଲାସ୍ଥ କୁହୁଡ଼ି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଗୋପବନ୍ଧୁ ପଟ୍ଟନାୟକ ଓ ମାତାଙ୍କ ନାମ ଚମ୍ପା ଦେଈ ।

ଉତ୍କଳ ସମ୍ମିଳନୀରେ ଯେଉଁ ଉଗ୍ର ଜାତୀୟ ଭାବର ଅଭ୍ୟୁଦୟ ହୋଇଥିଲା—ତାହାର ସଫଳ ଏବଂ ଗଠନାତ୍ମକ ରୂପାୟନ ଘଟିଥିଲା—୧୯୦୯-୧୦ ସମୟକୁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ । ଜାତୀୟ ଚିନ୍ତା ଓ ଦେଶ ଗଠନରେ ଏ ଦେଶର ଉତ୍ତର ପୁରୁଷଙ୍କୁ ଗଢ଼ିତୋଳିବାର ଅଭୀପ୍‌ସା ନେଇ ସତ୍ୟବାଦୀ ବନବିଦ୍ୟାଳୟ ସୃଷ୍ଟି ହେଲା । ଗୋପବନ୍ଧୁ ଓ ତାଙ୍କର ସହକର୍ମୀଙ୍କ ପ୍ରତ୍ୟକ୍ଷ ନେତୃତ୍ୱରେ ସତ୍ୟବାଦୀର ବକୁଳବନରେ ଏହି ବିଦ୍ୟାଳୟ ଏ ରାଜ୍ୟରେ ଶିକ୍ଷାକ୍ଷେତ୍ରରେ ଏକ ନୂତନ ଆଲୋକ ପ୍ରଦାନ କରିଥିଲା । ଜାତିର ଉନ୍ନତିସାଧନ ନିମନ୍ତେ ମନୁଷ୍ୟ ତିଆରି କରିବା ଏହି ବିଦ୍ୟାଳୟର ମୁଖ୍ୟ ଅଭିମୁଖ୍ୟ ଥିଲା । ବନବିଦ୍ୟାଳୟ ଜାତୀୟ ଚେତନାକୁ ପ୍ରତିଫଳିତ କରି ସବୁରି ଦିଗରେ ଜାତିର ଅଭାବ ଦୂର କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, ଲିଙ୍ଗରାଜ ପ୍ରମୁଖ ଥିଲେ ଏହି ବନବିଦ୍ୟାଳୟର ପ୍ରାଣ । କେବଳ ଶିକ୍ଷାକ୍ଷେତ୍ରରେ ନୁହେଁ ସେତେବେଳେ ସାମାଜିକ, ସାହିତ୍ୟିକ, ସଂସ୍କାର ଆନ୍ଦୋଳନର କେନ୍ଦ୍ରବିନ୍ଦୁ ଥିଲା ବନବିଦ୍ୟାଳୟ । ସତ୍ୟବାଦୀ ଚିନ୍ତାଧାରାର ଶ୍ରେଷ୍ଠ ପ୍ରକାଶକ ରୂପେ ନବକିଶୋର ପଟ୍ଟନାୟକ ସୁ-ପରିଚିତ । ନବକିଶୋର ଏହି ପ୍ରଖ୍ୟାତ ବିଦ୍ୟାଳୟରୁ ନିଜ ଛାତ୍ର ଜୀବନର ଶୁଭାରମ୍ଭ କରିଥିଲେ ।

୧୯୨୫ ମସିହାରୁ ୧୯୨୭ ମସିହା ପର୍ଯ୍ୟନ୍ତ ଏହି ପବିତ୍ର ଅନୁଷ୍ଠାନରେ ସେ ଅଧ୍ୟୟନ କରିଥିଲେ । ବିଦ୍ୟାଳୟଟି ବନ୍ଦ ହୋଇଯିବା ପରେ ସେ ସେଠାରୁ ଆସି କଟକ ପ୍ୟାରୀମୋହନ ଏକାଡ଼େମୀରେ ବର୍ଷଟିଏ ମାତ୍ର ପାଠପଢ଼ି ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ୧୯୨୮ ମସିହାରେ ନାମ ଲେଖାଇଥିଲେ । ୧୯୨୯ ସାଲରେ ସେ ଶେଷ ପରୀକ୍ଷା ଦେବା ପାଇଁ ସେଣ୍ଟଅପ ହୋଇଥିଲେ । ଏହି ସମୟରେ ଗାନ୍ଧିଜୀଙ୍କ ନେତୃତ୍ୱରେ ବିରାଟ ଆନ୍ଦୋଳନ ଦେଶର ପାଣି ପବନକୁ ପ୍ରକମ୍ପିତ କରୁଥିଲା ।

ନବକିଶୋର ଉଦ୍‌ବୁଦ୍ଧ ହେଲେ ଏହି ଆହ୍ୱାନରେ । ସେ ପାଠପଢ଼ା ଗୁଡ଼ିଏ ବିପ୍ଳବବାଦୀ ଆନ୍ଦୋଳନରେ ଯୋଗଦେଇ ନିଜର ବଳିଷ୍ଠ ସ୍ୱଦେଶ ପ୍ରୀତିର ଅପୂର୍ବ ପରିଚୟ ଦେଇଥିଲେ ।

## ସାଧନାର ପଥେ :

ନବକିଶୋର ପିତାମାତାଙ୍କର ଏକମାତ୍ର ସନ୍ତାନ । ଅଭାବ, ଅସୁବିଧା ଭିତରେ ସେମାନଙ୍କର ଜୀବନ ଗଣ୍ଠି—ପୁଅ ଉପରେ କେତେ ଆଶା ଓ ଭରସା ଏବଂ ଭବିଷ୍ୟତ ପାଇଁ ସେମାନଙ୍କର ସୁନ୍ଦର ନକ୍‌ସା । କିନ୍ତୁ ସବୁ କାଚଘର ଭଳି ଭାଙ୍ଗିଗଲା । ନବକିଶୋର ଘର, ପରିବାର, ସୁଖ, ସ୍ୱାଚ୍ଛନ୍ଦ୍ୟ; ଭବିଷ୍ୟତକୁ ପଛରେ ପକେଇ ଦେଶ କାମ କରିବା ପାଇଁ ବାହାରି ପଡ଼ିଲେ । ୧୯୩୦ ମସିହାର କଥା ଇଏ । ଦେଶରେ ସବୁଆଡ଼େ ସତ୍ୟାଗ୍ରହ । ଲୁଣ ମାରିବା ପାଇଁ ଗାନ୍ଧିଜୀଙ୍କ ଦୃପ୍ତ ଆହ୍ୱାନ । ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ତୀର୍ଥକ୍ଷେତ୍ର କଟକ ସ୍ୱରାଜ ଆଶ୍ରମରୁ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ସତ୍ୟାଗ୍ରହୀ ବାହିନୀ ପଦଯାତ୍ରାରେ ଗଲେ ବାଲେଶ୍ୱରକୁ ଲୁଣ ମାରିବା ପାଇଁ । ଜାତୀୟ ଜୀବନର ସାଦର ନିମନ୍ତ୍ରଣ । ନବକିଶୋର ଚାଲିଲେ ବାଲେଶ୍ୱର ଜାତୀୟ ସ୍ରୋତରେ ଏକାକାର ହୋଇଯିବାକୁ । ସେ ପରିବା ବାଲେଶ୍ୱର ପରମିଟ କୋଠିରେ ପହଞ୍ଚିଲେ । ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ ଆଚାର୍ଯ୍ୟ ହରିହରଙ୍କ ଏହି ବିଦ୍ୟାଳୟର ଛାତ୍ର ନବକିଶୋରଙ୍କ ସାକ୍ଷାତ ହୁଏ । ହରିହର ଖୁବ୍ ଭଲ ପାଉଥିଲେ ନବକିଶୋରଙ୍କୁ । ଏପରି ସହସା ବିପଦକୁ ଆମନ୍ତ୍ରଣ ନକରି ଘରକୁ ଫେରିଯିବା ପାଇଁ ହରିହର ପରାମର୍ଶ ଦେଲେ ପ୍ରିୟ

ସ୍ଥିର ନବକିଶୋରଙ୍କୁ । ପ୍ରବହମାନ ସ୍ରୋତ ସମ୍ମୁଖରେ ବାଲିବନ୍ଧଟିଏ କ'ଣ ଅଟକିବ । ସେ ସମ୍ମତ ହେଲେ ନାହିଁ । ସେଠାରୁ ସେ ଗଲେ ମୁକ୍ତି ଆନ୍ଦୋଳନର ଅନ୍ୟତମ ତୀର୍ଥ କ୍ଷେତ୍ର ଇଞ୍ଚୁଡ଼ିକୁ । ସେତେବେଳେ ପରମିଟ କୋଠି ଓ ଲବଣ ସତ୍ୟାଗ୍ରହର ପରିଚାଳକ ଥିଲେ ଡଃ ହରେକୃଷ୍ଣ ମହତାବ । ଡଃ ମହତାବ ସେଠାରେ ଜାଣିଲେ ଯେ ନବକିଶୋର ଜଣେ ସୁଦକ୍ଷ ଫଟୋ ଉଠାଳି, ତେଣୁ ଡଃ ମହତାବ ତାଙ୍କୁ କ୍ୟାମେରାଟିଏ ଧରାଇଦେଇ କହିଲେ—'ଯେତେବେଳେ ବିଭିନ୍ନ ଘଟଣାରେ ପୁଲିସ ସହ ସ୍ୱାଧୀନତା ସଂଗ୍ରାମୀଙ୍କ ସଂଘର୍ଷ, ସଂଗ୍ରାମ ହେବ, ସେତେବେଳେ ତୁମେ ଫଟୋ ଉତ୍ତୋଳନ କରିବ ।'

ମହତାବଙ୍କ ନିର୍ଦ୍ଦେଶ ଅନୁସାରେ ନବକିଶୋର ଲବଣ ସତ୍ୟାଗ୍ରହର ବହୁ ଘଟଣା ଓ ଦୃଶ୍ୟର ଫଟୋ ଉତ୍ତୋଳନ କରିଥିଲେ । ଏଥିପାଇଁ ପୋଲିସ୍‌ଠାରୁ ବହୁ ନିର୍ଯ୍ୟାତନା ସେ ପାଇଥିଲେ । ସେମାନେ ନବକିଶୋରଙ୍କଠାରୁ ବହୁବାର କ୍ୟାମେରା ଛଡ଼ାଇ ନେଇ ଖୋଲି ଦେଇଥିଲେ ଏବଂ ବହୁ ଏକ୍‌ସପୋଜର ନଷ୍ଟ କରି ଦେଇଥିଲେ । କେତେ କ୍ୟାମେରାକୁ ତଳେ ପିଟି ପୁଲିସ୍ ଭାଙ୍ଗି ଦେଇଛନ୍ତି ତାହାର ହିସାବ ନାହିଁ । ଏଥିପାଇଁ ନବକିଶୋର କେତେଥର ଜେଲ୍ ହାଜତରେ ରହିଥିଲେ । ଲୁଣ ମରା ପରେ ନିଶା ନିବାରଣ, ପାଇଁ ପୁଣି ଜାତିପ୍ରୂ ଆହ୍ୱାନ । ନିଶା ନିବାରଣ ଉଦ୍ଦେଶ୍ୟରେ ଖଜୁରୀ ଗଛ ଶହ ଶହ କଟା ହୋଇଥିଲା । ପୁଲିସ ସହ ସତ୍ୟାଗ୍ରହୀଙ୍କ ଧସ୍ତାଧସ୍ତି ହୋଇଥିଲା । ନବକିଶୋର ଏଭଳି ଘଟଣାର ସହସ୍ରାଧିକ ଫଟୋ ଉଠାଇ, ସେ ସବୁକୁ ପ୍ରିଣ୍ଟ କରି କଟକ ସ୍ୱରାଜ ଆଶ୍ରମକୁ ପଠାଉଥିଲେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କ ନିକଟକୁ । ସେ ଥିଲେ ସେତେବେଳେ ସ୍ୱରାଜ ଆଶ୍ରମର ପରିଚାଳକ । ସେହି ଅମୂଲ୍ୟ ସ୍ମୃତିରାଜି ଅର୍ଥାତ୍ ଫଟୋଗୁଡ଼ିକୁ ଆଲବମ୍‌ରେ ସଜ୍ଜିତ କରି ବମ୍ବେ କଂଗ୍ରେସ ଦାୟିତ୍ୱରେ ଥିବା ଶ୍ରୀମତୀ କମଳା ନେହେରୁ (ଜବାହରଲାଲ୍ ନେହେରୁଙ୍କ ପତ୍ନୀ)ଙ୍କୁ ପ୍ରଦାନ କରାଯାଇଥିଲା । ସେହି ଫଟୋଗୁଡ଼ିକୁ ଦେଖି କମଳା ନେହେରୁ ସେଦିନରେ ନେତୃମଣ୍ଡଳୀକୁ କହିଥିଲେ ଯେ—"ସମଗ୍ର ଦେଶରେ ଡାଣ୍ଡି ଲବଣ ସତ୍ୟାଗ୍ରହ ମହାତ୍ମାଜୀଙ୍କ ପ୍ରଥମ ଓ ଓଡ଼ିଶା ଦ୍ୱିତୀୟ ।"

## ସାଧନାର ଆଉ ଏକ ଦିଗନ୍ତ :

ପୁରୀରେ କଂଗ୍ରେସ ଅଧିବେଶନ ପାଇଁ ଅନେକ ସ୍ଥାନରେ ସ୍ୱେଚ୍ଛାସେବକ ଓ ତାଲିମ ଶିବିରମାନ ଖୋଲା ଯାଇଥିଲା । ବହୁ ଯୁବକ ଏଥିରେ ଯୋଗ ଦେଇଥାନ୍ତି । ଏଥିପାଇଁ ବହୁ ପ୍ରକାର ଶିକ୍ଷକ ନିଯୁକ୍ତି ପାଇଥାନ୍ତି । ନବକିଶୋର ହିନ୍ଦୀ ଶିକ୍ଷକ ଭାବରେ ଏହି ତାଲିମ ଶିବିରରେ ଯୋଗ ଦେଇଥିଲେ । ୧୯୪୨ ମସିହା—ଭାରତବର୍ଷରେ ବିରାଟ ଆନ୍ଦୋଳନ—'ଭାରତଛାଡ଼ ଆନ୍ଦୋଳନ' । ପୁରୀରେ ନବ-କିଶୋର ସତ୍ୟବାଦୀ ସ୍କୁଲର ଦୁଇଜଣ ସହପାଠୀଙ୍କ ସହ ମିଶି 'ସତ୍ୟାଗ୍ରହ ସମାଚାର' ଲିଥୋ ମେସିନରେ ଛାପି ବହୁ ପରିମାଣରେ ବଣ୍ଟନ କରୁଥିଲେ ।

ସେତେବେଳେ ସରକାର ସ୍ୱାଧୀନତା ସମ୍ପର୍କିତ ସମ୍ବାଦପତ୍ର ପ୍ରକାଶ ଉପରେ ଜୋର କଟକଣା ଜାରିକରି ପ୍ରକାଶନ ବନ୍ଦ କରିଥାନ୍ତି । ଏପରି ଅବସ୍ଥାରେ 'ସତ୍ୟାଗ୍ରହ ସମାଚାର' ବଣ୍ଟନ ଫଳରେ ବହୁ ତଥ୍ୟ ଓ ସମ୍ବାଦ ସଂଗ୍ରାମୀମାନେ ଜାଣିପାରିଲେ । ସାମ୍ବାଦିକ ଭାବରେ ନବ-କିଶୋରଙ୍କ କାର୍ଯ୍ୟ ଅତ୍ୟନ୍ତ ପ୍ରଶଂସନୀୟ ଥିଲା । ଏହି ସମୟରେ 'ବାନର ସେନା' କର୍ମୀମାନଙ୍କୁ ବିଭିନ୍ନ ସ୍ଥାନରେ ପୋଲିସ ଗିରଫ କରିବା ସହିତ ନିର୍ମମ ଭାବରେ ବାଡ଼ାଉଥାନ୍ତି । 'ବାନରସେନା'ଙ୍କୁ ନେତୃତ୍ୱ ଓ ପ୍ରେରଣା ଦେଉଥିବା ବ୍ୟକ୍ତିବିଶେଷଙ୍କୁ ପୁଲିସ ଗିରଫ କରି ଜେଲରେ ରଖୁ-ଥିଲେ । ସେତେବେଳେ ବାନର ସେନାଙ୍କ ପାଖକୁ ଯିବାକୁ ଭୟ । ସେମାନଙ୍କ ସହ କଥାହେଲେ ପୋଲିସ ଗିରଫ କରିନେବାର ପ୍ରବଳ ଆଶଙ୍କା । ନିର୍ଭୀକ ନବକିଶୋର ଏସବୁକୁ ଭ୍ରୂକ୍ଷେପ ନ କରି କେତେକ ବାନରସେନା ସଭ୍ୟଙ୍କ ସହ କଥାବାର୍ତ୍ତା ହୋଇ ଜାଣିଲେ ଯେ ସେମାନେ ଭୋକ ଉପାସରେ ଜୀବନ ବିତାଉଛନ୍ତି । କାରଣ ଯେଉଁମାନେ ତାଙ୍କୁ ଖାଦ୍ୟପଦାର୍ଥ ଦେବାର କଥା—ସେମାନେ ସମସ୍ତେ ଜେଲରେ । କେଉଁଦିନ ମଠରେ ଦିପହରିଆ ଅଭଡ଼ା ମିଳିଲା ତ କେଉଁଦିନ ଉପବାସ ରହିଲେ ସେନାନୀମାନେ ।

ଏହା ଜାଣି ଗୁଡ଼ ଓ ଚୂଡ଼ା ଇତ୍ୟାଦିକୁ ପୁଡ଼ାବାନ୍ଧି ସେମାନଙ୍କୁ ନବକିଶୋର ପ୍ରଦାନ କଲେ । କିଛିଦିନ ପରେ ଜଣେ ପୁଲିସ ଅଫିସର

ନବକିଶୋରଙ୍କ ଗତିବିଧିକୁ ଅନୁଧ୍ୟାନ କରି ତାଙ୍କୁ ଗିରଫ କରିନେଲେ । ପୁରୀ ଜେଲରେ ସେ ମାସାଧିକ କାଳ ରହିବା ପରେ ଖୋର୍ଦ୍ଧା ଜେଲକୁ ଆସିଲେ । ତାଙ୍କ ଗ୍ରାମର କେତେକ ପିଲାଙ୍କୁ ଉତ୍ସାହିତ କରି ବାନର ସେନାରେ ଅନ୍ତର୍ଭୁକ୍ତ କରିଥିବାରୁ ଇଂରେଜ ସରକାରଙ୍କ ଦୃଷ୍ଟିରେ ନବକିଶୋର ହେଲେ ଦୋଷୀ । ଖୋର୍ଦ୍ଧା ଏସ୍. ଡ଼ି. ଓ. କୋର୍ଟରେ ତାଙ୍କର ବିଚାର ହୋଇଥିଲା । କେତେକ ଓକିଲ ନବବାବୁଙ୍କ ପକ୍ଷ ନେଇ କେଶ୍ ଲଢ଼ିବାରୁ ସେ ନିର୍ଦ୍ଦୋଷରେ ମୁକ୍ତ ହେଲେ ।

ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ମହାନ ଯୋଦ୍ଧା ସର୍ବଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ, ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ, ଦିବାକର ଘଡ଼େଇ (ବାଲେଶ୍ୱର), ରମେଶଚନ୍ଦ୍ର ଦାସ (ସୁନହଟ), ବଳଭଦ୍ର ଦାସ (ଆଳି), ଗତିକୃଷ୍ଣ ସ୍ୱାଇଁ, (କାକଟପୁର), ରାଧାମୋହନ ପାଣି, ରଘୁନାଥ ପରିଡ଼ା (କୁହୁଡ଼ି), ଅରକ୍ଷିତ ପାତ୍ର ପ୍ରମୁଖ ଦେଶର ଅନେକ ବୀରପୁତ୍ର ନବକିଶୋରଙ୍କ ଥିଲେ ସହକର୍ମୀ ଓ ସହଯୋଦ୍ଧା । ସେ ଜେଲରୁ ମୁକ୍ତ ପରେ ଘରକୁ ଫେରି ଘରର ଶୋଚନୀୟ ଅବସ୍ଥା ଦେଖି ବ୍ୟଥିତ ହୋଇ ପଡ଼ିଲେ । ପିତା-ମାତା ଦୁଃଖ, ଶୋକ, ଅଭାବ, ଅସୁବିଧାରେ ଭାଙ୍ଗି ପଡ଼ିଥାନ୍ତି ।

ଏକମାତ୍ର ପୁତ୍ର ନବକିଶୋର ପରିବାରର ସୁରକ୍ଷା ପାଇଁ ଗାଁ ଗାଁ ବୁଲି ଫେଟା ଉଠାଇଲେ । ଦିନକୁ ମାତ୍ର ପାଞ୍ଚ/ଛଅ ଟଙ୍କା ଏଥିରୁ ମିଳୁଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇ ଯାଇଥାଏ । ଟଙ୍କା ପଇସାର ଘୋର ଅଭାବ । ଏପରିକି କିରୋସିନି ବି ମିଳିବା ସେତେବେଳେ କଷ୍ଟକର କଥା । ଯାହା କିରୋସିନି ମିଳିଲା ତାହାର ମୂଲ୍ୟ ଖୁବ୍ ବେଶି । ତେଲ ସେର ଚାରିଅଣା (ଯାହାର ଦାମ ବର୍ତ୍ତମାନ ୩୨ ଟଙ୍କା) । ଲୋକେ ବାଧ୍ୟ ହୋଇ ଘରେ ସବୁ ତେଲ ଦୀପ ଜାଳିଲେ । ନବକିଶୋର ଏହି ସମସ୍ୟାର ନିରାକରଣ ପାଇଁ ଚିନ୍ତାକଲେ । ସେ ଉଜ୍ଜ୍ୱଳ ତୈଳବର୍ତ୍ତିଟିଏ ତିଆରି କରି ଏହି ସମସ୍ୟାର ସମାଧାନ କଲେ । ଯାହା ଅତ୍ୟନ୍ତ ଅଭିନବ । ଲଣ୍ଠନରେ ପତଳା ତେଲ ଜାଳିବା ପାଇଁ ଗୋଟିଏ ଆଡ଼ପ୍‌ଟର ତିଆରି ସେ କରିଥିଲେ । ଏହା ଟିଣରେ ତିଆରି ହୋଇଥିଲା । ସ୍ୱଳ୍ପ ତୈଳରେ ଏହି ବର୍ତ୍ତିଟି ଜଳେ । ଉଜ୍ଜ୍ୱଳ ବର୍ତ୍ତିଟି ଏତେ ସୁନ୍ଦର

ହୋଇଥିଲା ଯେ କେରୋସିନ ବତୀଠାରୁ ଏହା ଅଧିକ ଉଜ୍ଜ୍ୱଳ ଆଲୋକ ପ୍ରଦାନ କରୁଥିଲା । ନବକିଶୋର ଦୁଇଟି ଆଡ୍ରେସ୍‌ରେ ପାର୍ଶଲ କରି କିଛିକ ପଠାଇଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏବଂ ଶିଳ୍ପମନ୍ତ୍ରୀଙ୍କ ନିକଟକୁ । ସେତେବେଳେ ପାରଳା ରାଜାଙ୍କ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ଶାସନ କରୁଥାନ୍ତି । ମୁଖ୍ୟମନ୍ତ୍ରୀ ଏହି ନୂତନ ବତୀଟି ଦେଖି ନବକିଶୋରଙ୍କୁ ଚିଠି ଲେଖିଲେ କଟକ ଆସିବା ପାଇଁ । ନବକିଶୋର ମୁଖ୍ୟମନ୍ତ୍ରୀ ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ମୁଖରେ ଏହି ବତୀଟି ଜାଳି ଦେଖାଇଲା ପରେ ବହୁ ପ୍ରଶଂସା ସେ ପାଇଥିଲେ । ଖୁବ୍ ଆଦର ଅଭ୍ୟର୍ଥନା ତାଙ୍କୁ ସେଦିନ ମିଳିଥିଲା । ତିନିଶହ ଟଙ୍କା ପୁରସ୍କାର ଭାବରେ ନବକିଶୋରଙ୍କୁ ସେଠାରେ ପ୍ରଦାନ କରାଯାଇଥିଲା । ପରବର୍ତ୍ତୀ ସମୟରେ ଏହି ଉଜ୍ଜ୍ୱଳ ବତୀ ପ୍ରସ୍ତୁତ କରିବା ପାଇଁ ଗୋଟିଏ ଗ୍ରେଟ କାରଖାନା ସେ ପ୍ରତିଷ୍ଠା କଲେ । ଏହାର ଚାହିଦା ଏତେ ବୃଦ୍ଧି ପାଇଲା ଯେ ଯେଉଁଦିନ ଯେତିକ ତିଆରି ହେଲା ତାହା ସେହିଦିନ ବିକ୍ରୀ ହୋଇଗଲା । ଏପରିକି ଡାକ ଯୋଗେ ସହସ୍ରାଧିକ ତୈଳବତୀ ପାର୍ଶଲ ଭାବରେ ଓଡ଼ିଶାର ବିଭିନ୍ନ ସ୍ଥାନକୁ ସେ ପଠାଇଛନ୍ତି ।

## ଆଉ ଏକ ଅଧ୍ୟାୟର ଶୁଭାରମ୍ଭ :

ନବକିଶୋରଙ୍କ ପ୍ରତିଭା ବହୁମୁଖୀ । ଦେଶସେବା, ସାହିତ୍ୟ ଓ କଳାର ସମନ୍ୱୟ ହେଉଛନ୍ତି ନବକିଶୋର ପଟ୍ଟନାୟକ । ସ୍ୱାଧୀନତା ପୂର୍ବରୁ ବା ପରେ କ୍ଷମତା ରାଜନୀତି ପ୍ରତି ନବକିଶୋର ମନ ବଳାଇ ନାହାନ୍ତି । ସେ ଥିଲେ ଯଥାର୍ଥରେ ଗାନ୍ଧିବାଦୀ ପୁରୁଷ । ଭାରତର ଆତ୍ମା ଗାଁରେ ରହିଛି । ଭାରତକୁ ଚହ୍ନିବାକୁ ହେଲେ ଗାଁକୁ ଯିବାକୁ ପଡ଼ିବ । ତେଣୁ ନବକିଶୋର ଗାଁର ଏବଂ ସର୍ବୋପରି ପଲ୍ଲୀ ଅଞ୍ଚଳ, ସାଧାରଣ ମଣିଷର ବିକାଶ ପାଇଁ ଯଥାର୍ଥ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି । ନିଜ ଜନ୍ମସ୍ଥାନ 'କୁହୁଡ଼ି' ଗ୍ରାମ ତାଙ୍କ ସାଧନାର ତୀର୍ଥକ୍ଷେତ୍ର । ଏହିଠାରେ ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରି ନବକିଶୋର ବହୁ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ତାଙ୍କ ତ୍ୟାଗ ଓ ସାଧନାର ଅନ୍ୟତମ ସ୍ମାରକୀ ଆର୍ଯ୍ୟକଳାନିଳୟ ।

'ଆର୍ଯ୍ୟକଳାନିଳୟ' ପ୍ରତିଷ୍ଠା କରି ନବକିଶୋର ଆଉ ଏକ ଅଧ୍ୟାୟର ଶୁଭାରମ୍ଭ କଲେ । ବେକାର ଯୁବକମାନଙ୍କୁ ନେଇ ଏହି ଅନୁଷ୍ଠାନର ପରିକଳ୍ପନା । ଏଥିରେ ପ୍ଲାଷ୍ଟର, ବଡ଼ ମୂର୍ତ୍ତି ନିର୍ମାଣ କରାଯାଏ । ସୋଲ, କରତଗୁଣ୍ଡ ଓ ଡନ୍ଲୁଲ ଅଠାରେ ଏହିସବୁ ମୂର୍ତ୍ତି ନିର୍ମିତ ହୁଏ । ଏହି ପଦାର୍ଥ ବ୍ୟବହାର ଦ୍ୱାରା ମୂର୍ତ୍ତିର ସାଇଜ୍ ଖୁବ୍ ଦୀର୍ଘ । କାଗଜକୁଟା ସାହାଯ୍ୟରେ ପ୍ଲାଷ୍ଟ କଣ୍ଢେଇ ଓ ନଡ଼ାର ଫଲ୍ସ ଏବଂ କରତଗୁଣ୍ଡ, କାସିନ ଓ ଚୂନ ମିଶାଇ କୃତ୍ରିମ କାଠର ଦର୍ପଣ ଫ୍ରେମ୍, ଫଟୋ ଫ୍ରେମ୍ ମଧ୍ୟ ଏହି ଅନୁଷ୍ଠାନ ନବକିଶୋରଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ ତିଆରି କରେ । ସତରେ ଏହି ଅନୁଷ୍ଠାନର କାର୍ଯ୍ୟ ଏବଂ ନବବାବୁଙ୍କ ଉଦ୍ୟମ କେତେ ଯେ ସୁଦୂର ପ୍ରସାରି ତାହା ନ ଦେଖିଲେ କେହି ବିଶ୍ୱାସ କରିପାରିବ ନାହିଁ । ଏଠାରେ ଅଙ୍କିତ ଓ୍ୱାଟର କଲର ପେଣ୍ଟିଂ ଅତିବ ଆକର୍ଷଣୀୟ । ଥିଏଟର ସିନ୍ ଓ ସେଟିଂ ବହୁ ଯାତ୍ରା ପାର୍ଟି ଓ ଯାତ୍ରାନୁଷ୍ଠାନକୁ 'ଆର୍ଯ୍ୟ-କଳାନିଳୟ' ଯୋଗାଇ ସୁନାମ ଅର୍ଜନ କରିଛି । ପାଣିରଙ୍ଗରେ (ସ୍ପ୍ରେ ପେଣ୍ଟିଂ) ଏଠାରୁ ତିଆରି କରାଯାଇ ବହୁ ଅଟ୍ଟାଳିକା ରଙ୍ଗାୟିତ ହୋଇଛି । ବହୁ ପ୍ରତିଷ୍ଠିତ ବ୍ୟକ୍ତି, ବରପୁତ୍ରମାନଙ୍କ ଫଟୋ ଏନଲାର୍ଜ କରିବା ସହିତ, ସିମେଣ୍ଟ ପ୍ଲାଷ୍ଟରରେ ମଧ୍ୟ ପ୍ରତିମୂର୍ତ୍ତି ନିର୍ମାଣ କରି କଳାର ବିକାଶରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଗ୍ରହଣ କରିଛି । ମହାତ୍ମା ଗାନ୍ଧିଙ୍କ ଠାରୁ ଆରମ୍ଭ କରି ପଣ୍ଡିତ ଗୋପବନ୍ଧୁ ପ୍ରଭୃତି ବହୁ କୃତବିଦ୍ ପୁରୁଷମାନଙ୍କର ପ୍ରତିମୂର୍ତ୍ତି ଏଠାରେ ନିର୍ମିତ ହୋଇଛି । 'ଆର୍ଯ୍ୟକଳାନିଳୟ' ଦ୍ୱାରା ଅଙ୍କିତ ପେଣ୍ଟିଂ ପ୍ରଭୃତିକୁ ଦେଖି ଆଚାର୍ଯ୍ୟ ହରିହର, ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ, ସମାଜ ସମ୍ପାଦକ ଡଃ ରାଧାନାଥ ରଥ, ଡଃ ସଦାଶିବ ମିଶ୍ର, ରାଜମାତା ବସନ୍ତ ମଞ୍ଜରୀ ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତି ଉଚ୍ଚ ପ୍ରଶଂସା କରିଛନ୍ତି ତାହା ଏହି ପ୍ରମୁଖ ଅନୁଷ୍ଠାନର ଗର୍ବ ଓ ଗୌରବ । କଳା, ନୈପୁଣ୍ୟଭରା ଏହି ଅନୁଷ୍ଠାନ ବାସ୍ତବରେ ଏକ ଚିତ୍ରଶାଳା । ଉତ୍କଳୀୟ କଳାର ବିକାଶ କେବଳ ନୁହେଁ ଆଗାମୀ ଉତ୍ତର ପୁରୁଷଙ୍କୁ ଏ କ୍ଷେତ୍ରରେ ପ୍ରସ୍ତୁତ କରିବାରେ ଏହାର ପ୍ରାଣ ପ୍ରତିଷ୍ଠାତା ନବକିଶୋର ପଟ୍ଟନାୟକ ଭୂମିକା ଗୁରୁତ୍ୱପୂର୍ଣ୍ଣ । ବାସ୍ତବରେ ଏହି ଅନୁଷ୍ଠାନ କଳାର କୋଣାର୍କ ।

ଉତ୍କଳର ଶିଳ୍ପକଳାର ନୈପୁଣ୍ୟ; ପରାକାଷ୍ଠା କୁଟୀର ଶିଳ୍ପରେ ପରିଦୃଷ୍ଟ ହୁଏ । ଏହି ଶିଳ୍ପର ବିକାଶ ପାଇଁ ପଞ୍ଚାଅଶୀ ବର୍ଷ ବୟସ୍କ ଗାନ୍ଧିବାଦୀ ମନୀଷି ନବକିଶୋରଙ୍କ ଅକ୍ଳାନ୍ତ ଉଦ୍ୟମ ଅବିସ୍ମରଣୀୟ । ତାଙ୍କ ହୃଦୟ ଆଜି ବି ସ୍ପନ୍ଦିତ ଏ ଜାତିର କୁଟୀର ଶିଳ୍ପର ଉନ୍ନତି ପାଇଁ । ଘରେ ବସି ଅଳ୍ପ ମୂଳଧନରେ ଶିଳ୍ପ କରାଯାଇ ପାରିବା ସମ୍ପର୍କରେ ଏହି ଅନୁଷ୍ଠାନ ଶିକ୍ଷା ପ୍ରଦାନ କରେ । ନିର୍ମାଣ କୌଶଳ ସମ୍ପର୍କରେ ସ୍ୱଳ୍ପ ମୂଲ୍ୟରେ ପାଠ୍ୟକ୍ରମ ଡାକରେ ମଧ୍ୟ ଏଠାରୁ ପଠାଯାଏ । ସାବୁନ (ଲୁଗା ସଫା ଓ ଦେହଲଗା), କେଶତୈଳ (ଆୟୁର୍ବେଦ ଓ ଏଲୋପାଥିକ), ପ୍ରସାଧନ ସାମଗ୍ରୀ ଯଥା ସ୍ନୋ, ପାଉଡ଼ର, କୁଙ୍କୁମ, ଅଳତା, ଧୂପକାଠି, ଜୋତା ପାଲିସ୍, ନେଲ୍ ପଲିସି, ଦର୍ପଣ, ଫାଉଣ୍ଟେନ୍ ପେନ୍ କାଳି ପ୍ରଭୃତି ତିଆରି କରିବା ପାଇଁ ପଚିଶଟି ବିଷୟ ଉପରେ ଏଠାରୁ ଶିକ୍ଷା ପ୍ରଦାନ କରାଯାଏ ।

ନବକିଶୋରଙ୍କ ଉଦ୍ୟମର ଆଉ ଏକ ଉଜ୍ଜ୍ୱଳ କୀର୍ତ୍ତିସ୍ତମ୍ଭ ହେଉଛି—'ଆର୍ଯ୍ୟ ଇଣ୍ଡଷ୍ଟ୍ରିଆଲ କୋ-ଅପରେଟିଭ ସୋସାଇଟି, କୁଜଙ୍ଗ' ଅନୁଷ୍ଠାନ । ଏହା ସରକାରୀ ସାହାଯ୍ୟପ୍ରାପ୍ତ ଅନୁଷ୍ଠାନ । ଏଠାରେ ସାବୁନ, କେଶତୈଳ, ପ୍ରସାଧନ ସାମଗ୍ରୀ, ଧୂପକାଠି, ଜୋତା ପାଲିସି, ନେଲ୍ ପଲିସି, ଫାଉଣ୍ଟେନ ପେନ୍ କାଳି ପ୍ରଭୃତି ତିଆରି କରାଯାଇ ବଜାରକୁ ବିକ୍ରୟ ପାଇଁ ପଠାଯାଏ । ଏହି ସୋସାଇଟିର ବାସନା ତେଲ, ଅମଳ ବ୍ରାହ୍ମୀ ତେଲ, ଧୂପକାଠି ଓ ଫାଉଣ୍ଟେନ୍ ପେନ୍ କାଳି ବେଶ୍ ଲୋକପ୍ରିୟ ହୋଇଛି ।

ନବକିଶୋର ବହୁ ଅନୁଷ୍ଠାନର ସ୍ରଷ୍ଟା । ଜାତିର, ରାଜ୍ୟର ସମୃଦ୍ଧି ପାଇଁ ତାଙ୍କ ଜୀବନ ସମର୍ପିତ । 'ଓରିଏଣ୍ଟାଲ ସେରାମିକ୍ ଓ୍ୱାର୍କସ' ତାଙ୍କ ହାତ ତିଆରି କାରଖାନା । ଏଥିରେ ଘର ଛପର ରାଣୀଗଞ୍ଜ ଟାଇଲ, ସୁନ୍ଦର ନକ୍ସାର ସୁରେଇ, କପ୍‌ପ୍ଲେଟ୍, ଫୁଲଦାନ, ଫୁଲକୁଣ୍ଡ, ଥାଳି, ଥାଳିଆ, ପ୍ରଭୃତି ନିର୍ମିତ ହୁଏ । ମାଟିର ସାନବଡ଼ ନଳ (ପାଇପ) ମଧ୍ୟ ଯଥେଷ୍ଟ ପରିମାଣରେ ଓରିଏଣ୍ଟାଲସେରାମିକ୍ ଓ୍ୱାର୍କସ ପ୍ରସ୍ତୁତ କରୁଥିଲା । ଏହାର ପ୍ରସ୍ତୁତ ଟାଇଲ ଓ ଅନ୍ୟାନ୍ୟ ପଦାର୍ଥ ଯେ ଉତ୍କୃଷ୍ଟତର ଏହା ବହୁବାର ପ୍ରମାଣିତ ହୋଇଛି । ୧୯୫୦ରେ ଆରମ୍ଭ

ହୋଇଥିବା ଏହି ଓ୍ୱାର୍କସ ପ୍ରାମାନ ମିସ୍ତ୍ରୀଙ୍କ ସହଯୋଗ ଯୋଗୁ ସାମୟିକ ବନ୍ଦ ହୋଇଛି । ଉତ୍କଳମଣି ସ୍ମୃତି ସଦନ ନିର୍ମାଣ ପାଇଁ ସେ ଏବେବି ଚେଷ୍ଟିତ । ଉତ୍କଳମଣିଙ୍କ ସ୍ମୃତି ରକ୍ଷା ପାଇଁ ସେ ଅନେକ ପରିକଳ୍ପନା କରିଛନ୍ତି ।

## ଗୋଟିଏ କୃତି ନୁହେଁ ଅନେକ କୀର୍ତ୍ତି :

ନବକିଶୋରଙ୍କ ଜୀବନଧାରା ଆମ ସମାଜ ପାଇଁ ପ୍ରେରଣାର ଧାରା । ବହୁ କର୍ମବ୍ୟସ୍ତତା ସତ୍ତ୍ୱେ ଓଡ଼ିଆ ଭାଷା ସାହିତ୍ୟ ବିଶେଷ କରି ନାଟ୍ୟ ସାହିତ୍ୟର ସମୃଦ୍ଧି ପାଇଁ ସେ ଚେଷ୍ଟିତ । ପୁଣି ସଂସ୍କାର ବାର୍ତ୍ତା ତାଙ୍କ ନାଟ୍ୟକୃତିର ପ୍ରାଣ । ତିନିଖଣ୍ଡି ନାଟକର ସେ ସ୍ରଷ୍ଟା । ଯାହା ସେ ଅନୁଭବ କରିଛନ୍ତି ତାହାକୁ ନାଟକ ମାଧ୍ୟମରେ ଫୁଟାଇ ଜନମାନସର ଦୃଷ୍ଟି ଆକର୍ଷଣ କରାଇବାରେ ସଫଳ ହୋଇଛନ୍ତି । ଅସ୍ପୃଶ୍ୟତା ନିବାରଣ ସମ୍ପର୍କରେ ନବକିଶୋର ୧୯୬୧ ମସିହାରେ ଲେଖନ୍ତି ହରିଜନ ନାଟକ । ୧୯୬୩-୬୪ରେ ସେ ରଚନା କରନ୍ତି 'ମନୁମେଣ୍ଟ' ନାଟକ । ବ୍ରିଟିଶ-ମାନଙ୍କର ଶାସନ ଓ ବ୍ୟବହାରକୁ କେନ୍ଦ୍ର କରି ଏହାର ସୃଷ୍ଟି । ନବକିଶୋରଙ୍କ ନାଟ୍ୟକୃତିର ଆଉ ଏକ ସଫଳ ମୂଲ୍ୟାୟନ ହେଉଛି 'ଯୌତୁକ' ନାଟକ । ୧୯୬୭ରେ ଏହାର ଆତ୍ମପ୍ରକାଶ । ସାମ୍ପ୍ରତିକ ସମାଜର ଘଟଣା ଅର୍ଥାତ ବର ପକ୍ଷର ଯୌତୁକଦାବି, ବଧୂହତ୍ୟା ବିଷୟକୁ ଭିତ୍ତିକରି ଏହି ସୁନ୍ଦର ନାଟକର ସୃଷ୍ଟି । ବହୁ ସୌଖୀନ ନାଟ୍ୟ ସଂସ୍ଥା ଦ୍ୱାରା ଏହି ନାଟକ ସ୍ୱୟଂ ବହୁବାର ଅଭିନୀତ ହୋଇ ଜନ ଆଦୃତ ହୋଇଛି । ନବକିଶୋର 'ଚେଷ୍ଟା କଲେ—ପାରିବ' ଭିନ୍ନ ସ୍ୱାଦର ଲେଖାଟି ପ୍ରତି ମାସରେ 'ସଂସାର' ପତ୍ରିକାରେ ପ୍ରକାଶିତ ହୋଇଛି । ଏହିସବୁ ରଚନା ତାଙ୍କ ସୃଜନଶୀଳ ପ୍ରତିଭାର ପରିଚାୟକ । ନବକିଶୋର ଗୋଟିଏ କୃତିର ନୁହେଁ ଅନେକ କୀର୍ତ୍ତିର ଯଥାର୍ଥ ଅଧିକାରୀ । ସେ ଯେ ଜଣେ ସମାଜ ସଂସ୍କାରକ ତାହା ସତରେ ତାଙ୍କର ନାଟକଗୁଡ଼ିକରୁ ସହଜରେ ବାରି ହୋଇ ପଡ଼େ । ନବକିଶୋରଙ୍କ ନାଟ୍ୟକୃତି ଆମ ଭାଷା ସାହିତ୍ୟର ଅମୂଲ୍ୟ ସମ୍ପଦ ।

## ଆଧ୍ୟାତ୍ମିକ ପୁରୁଷ ସେ :

ନବକିଶୋର ପ୍ରତିଭାର ବିଗନ୍ତ ବିଭିନ୍ନ ଦିଗକୁ ବିସ୍ତାରିତ ହୋଇଛି । ଆଜୀବନ ସାଧକ ନବକିଶୋରଙ୍କ ହୃଦୟ ବିଭୁ ଚିନ୍ତା ଭାବନାରେ ପରିପୂର୍ଣ୍ଣ । ସେ ଆଧ୍ୟାତ୍ମିକ ପୁରୁଷ । ନୀତିମୟ ଜୀବନଯାପନ କରିବା ସହିତ ଆଧ୍ୟାତ୍ମିକ ସୁଖଶାନ୍ତି ଲାଭ କରିବା ତାଙ୍କ ଜୀବନର ପରମଲକ୍ଷ୍ୟ । ପୂର୍ବେ ଆଠ ବର୍ଷ ହେଲା କୁଦୁଙ୍ଗଠାରେ 'ଗୀତା ସାରସ୍ୱତ ସଂଘ' ନବବାବୁଙ୍କ ସଦୁଦ୍ୟମରେ ଗଠିତ ହୋଇଛି । ସମାଜକୁ ନୀତିମୟ, ପବିତ୍ର କରିବା ଏବଂ ଧର୍ମ ପ୍ରତି ଲୋକଙ୍କୁ ଆକୃଷ୍ଟ କରିବା ପାଇଁ ତାଙ୍କର ଏହା ଏକ ପ୍ରଚେଷ୍ଟା । ଧର୍ମପ୍ରତି ଆକୃଷ୍ଟ ହେଲେ ଲୋକ ସହଜରେ କୌଣସି ଅନ୍ୟାୟ, ଅନୀତି କରିପାରେ ନାହିଁ ଫଳତଃ ମଣିଷ ଭଲ, ସୁନ୍ଦର ହୁଏ । ମଣିଷ ଭଲ, ସୁନ୍ଦର ହେଲେ ସମାଜ ସୁନ୍ଦର ହେବ । ସମାଜ ସୁନ୍ଦର ହେଲେ ଦେଶ, ଜାତି ସୁନ୍ଦର ହେବ ଏହା ନବକିଶୋର ଉପଲବ୍ଧି କରି ବୋଧହୁଏ ଏପରି ଅନୁଷ୍ଠାନକୁ ପ୍ରତିଷ୍ଠା କରିଛନ୍ତି । ପ୍ରତି ପୂର୍ଣ୍ଣିମାରେ ଗୀତା ପାରାୟଣ ହୋଇ ମାର୍ଗଶୀର ଶୁକ୍ଳ ଏକାଦଶୀରେ ଗୀତାର ଜୟନ୍ତୀ ପାଳନ କରାଯାଏ । ତିନି ଦିନ ଧରି ଉତ୍ସବଟି ଅନୁଷ୍ଠିତ ହୁଏ । ରାଜ୍ୟର ବହୁ ବିଶିଷ୍ଟ ବ୍ୟକ୍ତି, ସାହିତ୍ୟିକ, ପଣ୍ଡିତ, ପ୍ରାଜ୍ଞ ପୁରୁଷମାନେ ଗୀତା ଆଲୋଚନାରେ ଅଂଶଗ୍ରହଣ କରି ଧର୍ମଜ୍ଞାନ ଜନସାଧାରଣଙ୍କୁ ବିତରଣ କରନ୍ତି । ଉତ୍ସବ ଶେଷରେ ଯଜ୍ଞାହୁତି ଓ ଦରିଦ୍ରଭୋଜନ ପ୍ରଦାନ କରାଯାଏ ।

## ଏବଂ ଉପସଂହାରରେ···

ଉତ୍କଳମଣି ଗୋପବନ୍ଧୁ କହିଥିଲେ—

'ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ' ।

ବାସ୍ତବରେ ଏହି ଉକ୍ତିଟି ନବକିଶୋର ପଟ୍ଟନାୟକଙ୍କ ପ୍ରତି ପ୍ରଯୁଜ୍ୟ । ଜୀବନ ତାଙ୍କର କର୍ମମୁଖର, ଗତିମୁଖର । କର୍ମ ତାଙ୍କ ଜୀବନର ସାଥୀ, ସହୋଦର । ନବକିଶୋରଙ୍କ ଜୀବନ ବେଦନାବିଧୁର ।

ପିଲାଦିନୁ ଅଭାବ, ଅନାଟନ ମଧ୍ୟରେ ସଂଘର୍ଷ । ପୁଣି ୧୯୬୭ ମସିହାରେ ପତ୍ନୀଙ୍କ ବିୟୋଗ । ତଥାପି ଏସବୁ ବିପଦ, ସମସ୍ୟା ତାଙ୍କୁ ଲକ୍ଷ୍ୟଚ୍ୟୁତ କରି ପାରିନି ବରଂ ସେ ଅଟଳ, ସ୍ଥିର । ନବକିଶୋରଙ୍କ ଜୀବନ ଘଟଣା ବହୁଳ । ସତ୍ୟ, ସାଧୁତା, ନିଷ୍ଠା ପ୍ରତି ତାଙ୍କର ଗଭୀର ବିଶ୍ୱାସ ।

ସମୟର ଚକ ଅବାରିତ ଗତିରେ ଗଡ଼ି ଚାଲିଛି । ଉତ୍ତୀର୍ଣ୍ଣ ବାର୍ଦ୍ଧକ୍ୟରେ ସେ ଉପନୀତ । ତାଙ୍କ ଭାଷାରେ, 'ଦେହ ଅବଶ, ଗୋଡ଼ ଦି'ଓଟି ଦେହର ଭାର ସମ୍ଭାଳିବାକୁ ଅସମର୍ଥ । ଉଠିବା, ଚଳିବା, ଆସିବା କରିବା ସମ୍ଭବ ହେଉନାହିଁ ।' ଏସବୁ ଅସୁସ୍ଥତା ସତ୍ତ୍ୱେ ସିଦ୍ଧ ତପସ୍ୱୀ ନବକିଶୋର ଆଦର୍ଶକଳା ନିଳୟ, କୁହୁଡ଼ିଠାରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଏ ଜାତି, ଏ ଦେଶର ଉନ୍ନତିକଳ୍ପେ ତପସ୍ୟାରତ । ତାଙ୍କ ମହାମାୟତା, ଆତ୍ମତ୍ୟାଗ, କର୍ମନିଷ୍ଠା, ଆଗାମୀ ବଂଶଧରଙ୍କୁ ନୂତନ ଆଲୋକର ସନ୍ଧାନ ଦେବ ।



ସାମ୍ବାଦିକ—

# ରଘୁନାଥ ପାଠୀ ଶାସ୍ତ୍ରୀ

ଶ୍ରୀ କାଶୀନାରାୟଣ ମହାନ୍ତି

ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ସାମ୍ବାଦିକତାକୁ ଜୀବନର ବ୍ରତ ଭାବେ ଗ୍ରହଣ କରି ଯେଉଁ କେତେ ଜଣ କର୍ତ୍ତବ୍ୟନିଷ୍ଠ ନିର୍ଭୀକ ସଚେତନ ସାମ୍ବାଦିକ ସମାଜର ସଜାଗ ପ୍ରହରୀ ତଥା ଦିଗ୍‌ଦ୍ରଷ୍ଟା ଭାବେ ଗତ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ହେଲା ନିଜକୁ ନିୟୋଜିତ କରି ଆସିଛନ୍ତି ସେମାନଙ୍କ—ମଧ୍ୟରୁ ଶ୍ରୀଯୁକ୍ତ ରଘୁନାଥ ପାଠୀ ଶାସ୍ତ୍ରୀ ଓରଫ ଆର. ପି. ଶାସ୍ତ୍ରୀ ଓଡ଼ିଶାରେ ଏକ ପରିଚିତ ନାମ ।

ପିତା ପଣ୍ଡିତ ନଟବର ପାଠୀଶର୍ମା ଓ ମାତା କମଳା ଦେବୀଙ୍କର ସୁଯୋଗ୍ୟ ସନ୍ତାନ ଶ୍ରୀ ଶାସ୍ତ୍ରୀ ୧୯୧୮ ମସିହା ସେପ୍‌ଟେମ୍ବର ମାସ ଆଶ୍ୱିନ ସପ୍ତମୀ ତିଥିରେ ଗଞ୍ଜାମ ଜିଲ୍ଲାର ବଡ଼ଗଡ଼ ଗ୍ରାମରେ ଜନ୍ମଲାଭ କରିଥିଲେ । ପିତା ଶ୍ରୀଯୁକ୍ତ ପାଠୀଶର୍ମା କାଶୀର ପଣ୍ଡିତ ଶ୍ରୀକଣ୍ଠ ଶାସ୍ତ୍ରୀ ଓ ବନାରସର ସଂସ୍କୃତ ସ୍କୁଲରେ ସଂସ୍କୃତ ଶିକ୍ଷା କରିଥିଲେ । ପାଣିନି ବ୍ୟାକରଣ, ସଂସ୍କୃତ ସାହିତ୍ୟ, କର୍ମକାଣ୍ଡ ଓ ଜ୍ୟୋତିର୍ବିଦ୍ୟାରେ ନିପୁଣ ଶ୍ରୀଯୁକ୍ତ ପାଠୀଶର୍ମା ରାଜପୁରୋହିତ ଥିଲେ ଓ ଏକ ସୂର୍ଯ୍ୟଘଡ଼ି ବସାଇ ଥିଲେ ।

୧୯୪୦ରେ ସେ ପାଟନା ୟୁନିଭରସିଟିରୁ ମାଟ୍ରିକ୍ ପାସ୍ କଲେ । ୧୯୪୧ ମସିହା ଗ୍ରୀଷ୍ମ ଛୁଟିରେ ସେ ଗାଁକୁ ଯାଇଥିବା ସମୟରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ମହାତ୍ମା ଗାନ୍ଧିଙ୍କର ଜନ ସଚେତନତା ପ୍ରସାର ହେଉଥିଲା ।

ରଘୁନାଥ ପ୍ରଥମେ ଗାନ୍ଧି ସ୍କୁଲରେ ଓଡ଼ିଆ ମିଡ଼ିୟମରେ ପଢ଼ି, ୧୨ ବର୍ଷ ବୟସରେ ଅଷ୍ଟମ ଶ୍ରେଣୀ ପାଶ୍ କରି ଆସିକା ହାଇସ୍କୁଲରେ ଜଏନ୍ ଅନୁମତି ନପାଇ ୧୯୩୧-୩୨ ରେ ପୁରୀ ସଂସ୍କୃତ କଲେଜରେ ନାମ ଲେଖାଇଥିଲେ ।

କେହି ଯଦି ବଡ଼ ପାଟିକରି 'ସାମ୍ରାଜ୍ୟବାଦୀ ଯୁଦ୍ଧ ଧ୍ୱଂସ ହେଉ' । ବ୍ରିଟିଶ ସରକାର ଧ୍ୱଂସ ପାଉ । ମହାତ୍ମାଗାନ୍ଧିଙ୍କ ଜୟ କହି ଦେଉଥିଲା ତେବେ ସାଙ୍ଗେ ସାଙ୍ଗେ ଜେଲ ଦଣ୍ଡ ଭୋଗ କରିବାକୁ ପଡ଼ୁଥିଲା । ତେଣୁ ଶ୍ରୀ ଶାସ୍ତ୍ରୀ ରାତିରେ ଚକ୍‌ଖଡ଼ି ଓ ଅଙ୍ଗାରରେ କାନ୍ଥବାଡ଼ରେ ସେହି ସ୍ଲୋଗାନ ସବୁ ଲେଖୁଥିଲେ ।

ଧୀରେ ଧୀରେ ସେ ଗାନ୍ଧି ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ଖଦି ପ୍ରତି ଶ୍ରୀ ଶାସ୍ତ୍ରୀ ଆକୃଷ୍ଟ ହେଲେ । ଚରଖାରେ ସୂତାକାଟିବା ଇତ୍ୟାଦି କାମ ଗାନ୍ଧି ସ୍କୁଲରେ ପଢ଼ିବା ସମୟରୁ ଜାଣିସାରିଥିଲେ ।

ସେତେବେଳେ ଖାଦ୍ୟସାମଗ୍ରୀ ଖଣ୍ଡିକ ଦାମ୍ ଗୁରୁଣା । ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଥିବା ବେଳେ ଗଞ୍ଜାମର କୁମୁଟି ବ୍ୟବସାୟୀମାନେ ଖାଦ୍ୟଶସ୍ୟ ଲୁଚାଇ କୃତ୍ରିମ ଅଭାବ ସୃଷ୍ଟିକରି ଲାଭପାଇଁ ଦର ବଢ଼ାଉଥିଲେ । ସେମାନଙ୍କୁ ଶାସ୍ତିଦେଇ ଜନତାକୁ ସାହାଯ୍ୟ କରିବାପାଇଁ ଶ୍ରୀ ଶାସ୍ତ୍ରୀ ଜିଲ୍ଲାକଲେକ୍ଟର ଓ ପୁଲିସ ଏସ. ପି.ଙ୍କ ନିକଟକୁ ଏକ ମିଳିତ ଜନ ସମର୍ଥନ ନେତୃତ୍ୱରେ ଚିଠି ଲେଖିଲେ । କଲେକ୍ଟରଙ୍କ ଚିଠିପାଇ ତହସିଲଦାର ଖାଦ୍ୟଶସ୍ୟର ମହଜୁଦ୍ ସମ୍ପର୍କରେ ରିପୋର୍ଟ କରିବା ପରିବର୍ତ୍ତେ ବ୍ୟବସାୟୀଙ୍କ ଠାରୁ ଉତ୍କୋଚ ନେଇ ସେମାନଙ୍କ ନିକଟରେ ଧାନ ଓ ଅନ୍ୟାନ୍ୟ ରବି ଶସ୍ୟ ନାହିଁ ବୋଲି ରିପୋର୍ଟ ଦେଇଥିଲେ । କିନ୍ତୁ ଏସ. ପି. ନିଜେ ଆସି ପ୍ରତି ବ୍ୟବସାୟୀ ଠାରୁ ଭରଣ ଭରଣ ଧାନ ଚାଉଳ ଜବତ କରିଥିଲେ ଏବଂ ଶ୍ରୀ ଶାସ୍ତ୍ରୀଙ୍କୁ ଜଣେ ସଚ୍ଚୋଟ ନାଗରିକ ଭାବେ ସରକାରୀ ନିର୍ଦ୍ଧାରିତ ମୂଲ୍ୟରେ ସର୍ବସାଧାରଣରେ ବଣ୍ଟି ଦାୟିତ୍ୱ ଦେଇଥିଲେ । ଲବ୍ଧ ଅର୍ଥ 'ଓ୍ୱାରଫଣ୍ଡ'କୁ ପଠାଯାଇଥିଲା ।

ରେଭିନ୍ୟୁ ଇନ୍‌ସପେକ୍ଟରମାନେ 'ଓ୍ୱାରଫଣ୍ଡ' ନାଁରେ ନିରୀହ ଲୋକମାନଙ୍କଠାରୁ ଟଙ୍କା ଆଦାୟ କରିବା ସହ ଗରିବ ଲୋକମାନଙ୍କ ଠାରୁ ଧମକଚମକ ଦେଇ କୁକୁଡ଼ା ଛେଳି ଆଦି ନେଇ ଯାଉଥିଲେ ।

ଶ୍ରୀ ଶାସ୍ତ୍ରୀ ଏହାର ପ୍ରତିବାଦ କରିବାରୁ ସେମାନେ ଡ଼.ଆଇ.ଆର୍. ରେ ତାଙ୍କୁ ବୁକ୍ କରିବାକୁ ମିଥ୍ୟା ଉଦ୍ୟମ କରି ବ୍ୟର୍ଥ ହେବାପରେ ଧାନଚୋର କେଶରେ ପକେଇ ଗିରଫ କରିଥିଲେ ।

ଠିଙ୍କାକ ଷୋଳଅଣା ସ୍ଥାନରେ ଅସାଧୁ ବ୍ୟବସାୟୀମାନେ ଖୁଚୁରା ଭଙ୍ଗାଇଲେ ତେରଅଣା ଦୁ'ପଇସା ଦେବାରୁ ଶାସ୍ତ୍ରୀ ତାର ପ୍ରତିବାଦ କରି ମକଦମା କରିଥିଲେ ।

୧୯୪୩ରେ 'ଦୈନିକ ଆଶା'ରେ ବାର୍ତ୍ତାବାଦରର କାମ କରୁଥିବା ବେଳେ ସେ ରେଭେନ୍ସା କଲେଜରେ ପ୍ରଥମ ବର୍ଷ କଳା ବିଭାଗରେ ନାଁ ଲେଖାଇଥିଲେ । ସାମ୍ବାଦିକ ହେତୁ ତାଙ୍କୁ ରେଭେନ୍ସା ଛାତ୍ରାବାସରେ ଫ୍ରି ମିଲ୍ ମିଳୁଥିଲା ଏବଂ ସେ ଚୁଲି ଚୁଲି ବାର୍ତ୍ତାବାଦ ଯା ଆସ କରୁଥିଲେ ।

ଅର୍ଥାଭାବ ହେତୁ ଯେତେ ନୁହେଁ ସମୟ ଅଭାବରୁ ସେ ଅଧିକ ପାଠ ପଢ଼ିବାପାଇଁ ଚିନ୍ତା ମଧ୍ୟ କରିପାରି ନଥିଲେ ।

ଜୀବନରେ ସେ ଅଠର ଘଣ୍ଟାକାଳ ଅକ୍ଳାନ୍ତ ପରିଶ୍ରମ କରି ସମୟର ପୂର୍ଣ୍ଣ ବିନିଯୋଗ କରିପାରିଛନ୍ତି । ତାଙ୍କର ଅସାଧାରଣ ପାଣ୍ଡିତ୍ୟ ନିକଟରେ ଯେକୌଣସି ସର୍ବୋଚ୍ଚ ଡ଼ିଗ୍ରୀଧାରୀର ମଧ୍ୟ ମୁଣ୍ଡ ନଇଁଯାଏ ।

## ସୁଭାଷ ବୋଷଙ୍କ ସହିତ ସାକ୍ଷାତ :

୧୯୩୯ ମସିହାର ଘଟଣା । ନେତାଜୀ ସୁଭାଷ ବୋଷ କଂଗ୍ରେସରୁ ଇସ୍ତଫା ଦେଇ 'ଫରୱାର୍ଡ଼ ବ୍ଲକ୍' ଦଳ ଗଢ଼ିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ ପୁରୀରେ ଆଲୋଚନା ଚଳାଇଥାନ୍ତି । ପୁରୀରେ ନେତାଜୀ-ଙ୍କର ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ପୁରୀ କଲେକ୍ଟରଙ୍କ ନିର୍ଦ୍ଦେଶ ସ୍ଥାନୀୟ ସ୍କୁଲ କଲେଜର ସବୁ ଛାତ୍ର ଛାତ୍ରୀ ଉକ୍ତ ସଭାକୁ ବର୍ଜନ କରିବା ପାଇଁ ।

ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କୁ ଏହି ନିର୍ଦ୍ଦେଶ ଅଡ଼ିସୁ କଲା । ସେ ତାଙ୍କର ଅନ୍ୟ ଦୁଇଜଣ ବନ୍ଧୁଙ୍କୁ ନେଇ ସୁଭାଷଜୀଙ୍କୁ ସାକ୍ଷାତ କରି ଏହି ନିର୍ଦ୍ଦେଶ ସମ୍ପର୍କରେ ଜଣାଇବାରୁ ନେତାଜୀ ସାମାନ୍ୟ ହସି କହିଥିଲେ, ବର୍ତ୍ତମାନ

ବିଶ୍ୱନାଥ ଦାସଙ୍କ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲେ; ବୋଧହୁଏ ବିଶ୍ୱନାଥବାବୁ ଏ କଥା ଜାଣି ନାହାଁନ୍ତି ।

ପଣ୍ଡିତ ନୀଳକଣ୍ଠ ଦାସ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଏ ସମ୍ପର୍କରେ ପଚାରିବା ପରେ ସେ କହିଥିଲେ—ସୁଭାଷବାବୁଙ୍କ ସଭାକୁ ନ ଯିବାପାଇଁ ଯଦି କେହି ନିଷିଦ୍ଧ କରିଥାଏ, ତେବେ ତାହା ପ୍ରତ୍ୟାହୃତ ହେବ ଏବଂ ସେ ନିଜେ ମଧ୍ୟ ତାଙ୍କ ସଭାରେ ଯୋଗଦେବେ । ଠିକ୍ ତାହାହିଁ ହେଲା । କଲେକ୍ଟରଙ୍କ ଆଦେଶ ପ୍ରତ୍ୟାହୃତ ହେଲା କିନ୍ତୁ ଛାତ୍ରାବାସୀମାନଙ୍କୁ ହଷ୍ଟେଲରେ ତାଲା ପକେଇ ରଖି ସଭାକୁ ଛାଡ଼ି ଦିଆଯାଇ ନଥିଲା ।

ଶାସ୍ତ୍ରୀ, ହଷ୍ଟେଲର ପାଚେରୀ ଡେଇଁ ସଭାରେ ଯୋଗ ଦେଲେ । ସଭାର ବିବରଣୀ ପୋଷ୍ଟକାର୍ଡ଼ରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ଦୈନିକ 'ଆଶା'ର ସମ୍ପାଦକ ଶ୍ରୀଯୁକ୍ତ ଶଶିଭୂଷଣ ରଥଙ୍କ ପାଖକୁ ଲେଖି ପଠାଇ ଥିଲେ । ଦୁଇଦିନ ପରେ ତାହା ଯେତେବେଳେ ପ୍ରକାଶ ପାଇଲା ସେଇ ସମ୍ବାଦ ପାଠକରି ତାଙ୍କ ଜୀବନରେ ସାମ୍ବାଦିକତାର ମୋହ ଜାଗି ଉଠିଲା ।

## ଦୈନିକ 'ଆଶା'ରେ ଯୋଗଦାନ :

ସ୍ୱର୍ଗତ କେ. ଏମ୍. ଆଚାରୀ ହେଉଛନ୍ତି ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ସାମ୍ବାଦିକ ଓ ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ପରମବନ୍ଧୁ । ସେ ଖୁବ୍ ହୃଦୟବାନ ସଚ୍ଚୋଟ ଓ ଇଂରାଜୀ ଭାଷାରେ ପ୍ରବୀଣ ବ୍ୟକ୍ତିଥିବାରୁ ତାଙ୍କୁ ବଡ଼ ବଡ଼ ଆଇ ସି. ଏସ୍. ଅଫିସରମାନେ ସମ୍ମାନ କରୁଥିଲେ ।

ଶ୍ରୀଯୁକ୍ତ ଶାସ୍ତ୍ରୀ ଯେତେବେଳେ କଟକରେ ଦୈନିକ 'ଆଶା'ରେ ଯୋଗ ଦେଇଥାନ୍ତି, ସ୍ୱର୍ଗତ ଆଚାରୀ ମଧ୍ୟ ତାଙ୍କୁ 'ନ୍ୟୁ ଓଡ଼ିଶା' ପାଇଁ କାର୍ଯ୍ୟ କରିବାକୁ କହିଥିଲେ । ଜଣେ ନିର୍ଭୀକ ଓ ନିରପେକ୍ଷ ସାମ୍ବାଦିକ ହେତୁ ସେ କାହାକୁ ଭୟ କରୁନଥିଲେ । ସେତେବେଳର ଜଣେ ପ୍ରଭାବଶାଳୀ ନେତାଙ୍କ କାର୍ଯ୍ୟକଳାପର ସମାଲୋଚନା କରିଥିବାରୁ ତାଙ୍କୁ 'ନ୍ୟୁ ଓଡ଼ିଶା' ସମ୍ପାଦକ ପଦ ତ୍ୟାଗ କରିବାକୁ ପଡ଼ିଥିଲା । ସେହିଯୋଗୁ 'ଦୈନିକ ଆଶା'ରୁ ମହେନ୍ଦ୍ର ବାବୁଙ୍କୁ ମଧ୍ୟ ବିଦାୟ ନେବାକୁ ପଡ଼ିଥିଲା । ତା'ପରେ ସୁସାହିତ୍ୟିକ କବି ନିତ୍ୟାନନ୍ଦ ମହାପାତ୍ର 'ଦୈନିକ ଆଶା'ର ସମ୍ପାଦନା କଲେ । ସମ୍ବାଦପତ୍ର

ସମ୍ପାଦନା ସହ ତାଙ୍କର ପୂର୍ବରୁ ସମ୍ପର୍କ ନଥିଲେ ବି ନିଜର ପ୍ରତିଭା ଓ ପ୍ରଭାବ ବଳରେ ସମସ୍ତଙ୍କୁ ଆପଣାର କରି ସେ କାର୍ଯ୍ୟ ସମ୍ପନ୍ନ କରୁଥିଲେ ।

ସ୍ୱର୍ଗତ ଅଗ୍ରଜ 'ନ୍ୟୁ ଓଡ଼ିଶା' ଛାଡ଼ିଲା ପରେ କଲିକତାରୁ ଶ୍ରୀ ବିନୟ ରାୟ ଆସି ସମ୍ପାଦନା ଆରମ୍ଭ କଲେ । ସେ ଥିଲେ ପ୍ରଗତିଶୀଳ ଓ ବାମ୍‌ପନ୍ଥୀ । ତାଙ୍କ ଲେଖାଥିଲା ଖୁବ୍ ଶାଣିତ । ଶ୍ରୀଯୁକ୍ତ ଶାସ୍ତ୍ରୀ ତାଙ୍କ ଲେଖାରେ ପ୍ରଭାବିତ ହୋଇଥିଲେ ।

ବିନୟ ବାବୁ 'ନ୍ୟୁ ଓଡ଼ିଶା'ରେ 'ଚୌଧୁରୀସ ଚୌକିଦାରୀ' ଶିରୋନାମାରେ ଏକ ଅଗ୍ରଲେଖା ଲେଖି ନବବାବୁଙ୍କୁ ତୀବ୍ର ସମାଲୋଚନା କରିଥିଲେ । ନବବାବୁ ଏଥିରେ ଉତ୍‌କ୍ଷିପ୍ତ ନହୋଇ ସାମ୍ବାଦିକମାନଙ୍କର ସମାଲୋଚନାର ସ୍ୱାଧୀନତା ରହିବାରୁ କହି ନୀରବ ରହିଲେ । କଂଗ୍ରେସର ଅନ୍ୟ ନେତାମାନଙ୍କର ଗୃପ ଯୋଗୁ ଯାଜୋଡ଼ିଆଙ୍କ ଦ୍ୱାରା ସେ 'ନ୍ୟୁ ଓଡ଼ିଶା'ର ଯେଉଁ ଅଚଳ ଅବସ୍ଥା ସୃଷ୍ଟି ହେଲା, ତାହାକୁ ଶ୍ରୀଯୁକ୍ତ ଶାସ୍ତ୍ରୀ ଓ ରାମପ୍ରସାଦ ସିଂହ ସମ୍ଭାଳି ନେଲେ । ମାସ ପରେ ମଦନବାବୁଙ୍କର ତାଙ୍କ ପ୍ରତି ବିରକ୍ତି ଯୋଗୁଁ ଶାସ୍ତ୍ରୀ 'ନ୍ୟୁ ଓଡ଼ିଶା'ରୁ ବିଦାୟ ନେଲେ ।

## ଗ୍ଲୋବ୍ ନିଉଜ୍ ଏଜେନ୍‌ସିରେ ଯୋଗଦାନ :

ସମ୍ପୂର୍ଣ୍ଣ ସମୟ ଦେଇ ସ୍ୱାଧୀନ ଭାବେ କାର୍ଯ୍ୟ କରି ଆତ୍ମସନ୍ତୋଷ ଲାଭ ପାଇଁ ସେ ଗ୍ଲୋବ୍ ନିଉଜ୍ ଏଜେନ୍‌ସିରେ ୧୯୪୭ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ଗ୍ଲୋବ ନିଉଜ ଏଜେନ୍‌ସି ଛାଡ଼ିବା ପୂର୍ବରୁ ତହିଁରେ ତତ୍‌କାଳୀନ ଭାରତର ସରକାର ଗଠନ ସମ୍ପର୍କରେ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପ୍ରକାଶ କରିଥିଲେ ।

ଭାରତକୁ କ୍ଷମତା ହସ୍ତାନ୍ତର କରିବା ପାଇଁ କେନ୍ଦ୍ରରେ ଜବାହରଙ୍କ ନେତୃତ୍ୱରେ ୧୯୪୭ ଜୁନ ୧୭ ରେ ଲର୍ଡ ଓ୍ୱାଭେଲ୍ ଗୋଟିଏ ଅନ୍ତର୍ବର୍ତ୍ତୀ କଂଗ୍ରେସ ଲିଗ୍ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେହି ମନ୍ତ୍ରି-ମଣ୍ଡଳରେ କଂଗ୍ରେସ ତରଫରୁ କେଉଁମାନେ ମନ୍ତ୍ରୀହେବେ ନେହେରୁ ତାହାର ଏକ ତାଲିକା ଭାଇସରାୟଙ୍କୁ ଦେଲେ ଏବଂ ଲିଗ୍ ନେତା ଜିନ୍ନା

ଓ କାଗ୍ଯାକାନ୍ତ ଅଳି ସେମାନଙ୍କ ମନ୍ତ୍ରୀ ତାଲିକା ଦେଇଥିଲେ । କିନ୍ତୁ ତାଲିକାରେ ଜଣେ ପରାଜିତ ପ୍ରାର୍ଥୀଙ୍କ ନାମ ଅନ୍ତର୍ଭୁକ୍ତ ଥିଲା ତେଣୁ ନେହେରୁ ତାଙ୍କୁ ତାଲିକାରୁ ବାହାର କରିବାକୁ କହିବାରୁ ଭାଇସରୟ ସେ ତାକୁ ପ୍ରତ୍ୟାଖାନ କରିଦେଲେ ତାହା ନୁହେଁ ଅପମାନ ଦେବା ପାଇଁ ତାଙ୍କ ମନ୍ତ୍ରୀତାଲିକାରୁ ଶରତଚନ୍ଦ୍ର ବୋଷଙ୍କୁ ବାଦଦେଇ ନେହେରୁଙ୍କ ବିନା ପରାମର୍ଶରେ ଓଡ଼ିଶାର ତଦାନିନ୍ତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କୁ ଅନ୍ତର୍ଭୁକ୍ତ କରିଥିଲେ । ଏହା କଂଗ୍ରେସ କାର୍ଯ୍ୟକାରୀ କମିଟି ତଥା ନେହେରୁଙ୍କ ରାଜନୀତିମହଲ ଏପରିକି ଗାନ୍ଧିଜୀଙ୍କ ତୀବ୍ର ଅସନ୍ତୋଷର କାରଣ ହୋଇଥିଲା ।

ଭାଇସରୟ ଯେପରି ନେହେରୁଙ୍କୁ ବ୍ୟବହାର କରିଥିଲେ ଏବଂ ତାଙ୍କ ଅଜ୍ଞାତରେ ମହତାବଙ୍କୁ ମନ୍ତ୍ରୀ ତାଲିକାରେ ଅନ୍ତର୍ଭୁକ୍ତ କରିଥିଲେ ସେହିପରିଭାବେ ମହତାବଙ୍କ ଦ୍ୱାରା ଭାଇସରାୟଙ୍କୁ ଜବାବ ଦିଆଗଲା । ଶେଷକୁ ବାଧ୍ୟହୋଇ ଓ୍ୱାଭେଲ ମହତାବଙ୍କୁ ମନ୍ତ୍ରୀତାଲିକାରୁ ବାଦ ଦେଇଥିଲେ ।

ତାଙ୍କ ସ୍ଥାନରେ ନେହେରୁଙ୍କ ମନୋନୀତ ପ୍ରାର୍ଥୀ ଶରତଚନ୍ଦ୍ର ବୋଷଙ୍କୁ ନିଆଯାଇଥିଲା । ତା' ପରଠାରୁ କଂଗ୍ରେସ କମିଟି ସହ ଭାଇସରାୟଙ୍କର ସମ୍ପର୍କ ତିକ୍ତ ହୋଇଗଲା । ଅଥଚ-ମୌଲାନା ଆଜାଦ ଲର୍ଡ଼ ଓ୍ୱାଭେଲଙ୍କ ସହ ଉତ୍ତମ ସମ୍ପର୍କ ରଖିଥିଲେ । ମହତାବଙ୍କ ପ୍ରତି ଭାଇସରୟଙ୍କର ସହାନୁଭୂତି ଅତୁଟ ରହିଥିଲା ।

ଶ୍ରୀଯୁକ୍ତ ଶାସ୍ତ୍ରୀ ଏହି ପ୍ରତିକ୍ରିୟା ସମ୍ପର୍କରେ ଗ୍ଲୋବ ନ୍ୟୁଜ ଏଜେନ୍‌ସିକୁ ଯେଉଁ ସମ୍ବାଦ ପଠାଇଥିଲେ ତାହା ପ୍ରକାଶ ନ ପାଇ ତାଙ୍କ ପାଖକୁ ଫେରି ଆସିଥିଲା । ତାର କାରଣ ହେଲା ଯେଉଁ ଦୁଇଜଣ ଏପରି କରିଥିଲେ, ସେମାନେ ବ୍ରିଟିଶ ସରକାରଙ୍କ ମିଲିଟାରୀ ଇଣ୍ଟେଲିଜେନ୍‌ସି ସହିତ ସମ୍ପୃକ୍ତ ଥିଲେ ।

ସେତେବେଳର ପ୍ରଧାନମନ୍ତ୍ରୀ ଥିଲେ ବିଶ୍ୱନାଥ ଦାସ । ରଣପୁରରେ ପ୍ରଜା ଆନ୍ଦୋଳନ ଭୀଷଣ ଆକାର ଧାରଣ କରିଥିଲା । ପ୍ରଜାମାନଙ୍କୁ ଦମନ କରିବା ପାଇଁ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍‌ସି ପଲିଟିକାଲ ଏଜେଣ୍ଟ 'ବେଜେଲ-ଗେଟ' ସଶସ୍ତ୍ର ପୋଲିସବାହିନୀ ଧରି ନାନା ଅକଥନୀୟ ଅତ୍ୟାଚାର ଚଳାଇ

ବନ୍ଧୁକଲେକଙ୍କୁ ଗୁଳି କରି ହତ୍ୟା କଲା ପରେ ଉତ୍ତ୍ୟକ୍ତ ଜନତା ବେକେଲ-ଗେଟ୍‌କୁ ପିଟିପିଟି ମାରିପକେଇଲେ । ଭୟରେ ଅଳ୍ପ କେତେକ ପୁଲିସ ଛତ୍ରଭଙ୍ଗ ହେଲେ । ପ୍ରଜାମାନେ ରଣପୁର ଗଡ଼ଜାତ ଛାଡ଼ି ବ୍ରିଟିଶ ଖାସମାହାଲକୁ ଚାଲିଯାଇଥିଲେ ।

ଘଟଣାଚକ୍ରରେ ମହତାବବାବୁ ତଦନ୍ତ କରିବାପାଇଁ ରଣପୁର ଯାଇଥିଲେ । ରଣପୁର ଯିବାପୂର୍ବରୁ ଟାଙ୍ଗିଥାନାରେ ସେ ତାଙ୍କ ଗସ୍ତ ବିଷୟ ଲେଖି ଯାଇଥିଲେ ।

ଶ୍ରୀଯୁକ୍ତ ଶାସ୍ତ୍ରୀ ନିଜର କର୍ତ୍ତବ୍ୟଦୃଷ୍ଟିରୁ ମହତାବଙ୍କ ତଦନ୍ତ ସମ୍ପର୍କରେ ଏକ ସମ୍ବାଦ ପରିବେଷଣ କରିଥିଲେ ।

## 'ପ୍ରଜାତନ୍ତ୍ର'ରେ ଯୋଗଦାନ :

ଶ୍ରୀଯୁକ୍ତ ଚିନ୍ତାମଣି ମିଶ୍ରଙ୍କ ଦ୍ୱାରା ୧୯୪୭ ମସିହାରେ ମହତାବ-ବାବୁଙ୍କ ଡାକରାରେ ସେ ପ୍ରଜାତନ୍ତ୍ରରେ କାମ ଆରମ୍ଭ କରିଥିଲେ । ଚିନ୍ତାମଣି-ବାବୁ ସେତେବେଳେ ଓଡ଼ିଶା ସରକାରଙ୍କର ଜଣେ ପଦସ୍ଥ ଅଫିସର ।

ମହତାବବାବୁ ତାଙ୍କ ଉପରେ ପ୍ରଜାତନ୍ତ୍ରର ସମସ୍ତ ଦାୟିତ୍ୱ ଲଦି ଦେଇଥିଲେ । ଚିନ୍ତାମଣିବାବୁ ଅନଭିଜ୍ଞ ଯୁବକଙ୍କୁ ନେଇ ପ୍ରଜାତନ୍ତ୍ରକୁ ସୁରୁରୁ ଦୈନିକ ପ୍ରକାଶ କରିବାକୁ ଅସମର୍ଥ ହେବାରୁ ଶ୍ରୀ ଶାସ୍ତ୍ରୀଙ୍କୁ ପ୍ରଜାତନ୍ତ୍ରକୁ ନେଇ ଯାଇଥିଲେ ।

ପ୍ରଜାତନ୍ତ୍ର ସ୍ୱରାଜ ଆଶ୍ରମରେ ଥିବା ମହତାବ ନିବାସରୁ ଆରମ୍ଭ ହେଲା । ବାଲୁବଜାରରେ ଥିବା ଦାଶରଥି ପ୍ରେସରେ ମୁଦ୍ରିତ ହୋଇ ପ୍ରଥମେ ଡ୍ରାଉନ୍ ସାଇଜରେ ଚାରିପୃଷ୍ଠାରେ ପ୍ରକାଶ ପାଇଥିଲା । ସେତେବେଳେ ଏତେ କମ୍ ପୃଷ୍ଠା ପାଇଁ ମଧ୍ୟ A P.I. (ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆ) ଠାରୁ ଯଥେଷ୍ଟ ସମ୍ବାଦ ପାଇବା ସମ୍ଭବ ହେଉନଥିଲା । ସେତେବେଳେ ଟେଲିପ୍ରିଣ୍ଟର ସର୍ଭିସ ମଧ୍ୟ ନଥିଲା ।

କିଛି କିଛି ଯେଉଁ ସମ୍ବାଦ ଟେଲିଗ୍ରାମ ଯୋଗେ ଆସେ ତାକୁ ଟାଇପକରି A. P. I.ର ପ୍ରତିନିଧି ଏନ୍. ଆର୍. ସ୍ୱାମୀ ଶାସ୍ତ୍ରୀଙ୍କ ପାଖକୁ ପଠାଇଥାନ୍ତି । 'ଗ୍ଲୋବ ନ୍ୟୁଜ ଏଜେନ୍‌ସିର ସମ୍ବାଦ ସବୁ ଆଣି ଅନୁବାଦ କରି ପ୍ରଜାତନ୍ତ୍ରରେ ସେ ପ୍ରକାଶ କରୁଥିଲେ । ତା'ଛଡ଼ା ସ୍ଥାନୀୟ ସମ୍ବାଦ

ଲାଲବାଗ ଥାନା କଚେରୀ ଇତ୍ୟାଦିରୁ ଆଣି ପ୍ରଜାତନ୍ତ୍ରରେ ପ୍ରକାଶ କରୁଥିଲେ ।

ପ୍ରଜାତନ୍ତ୍ରର କାମ ଚାଲିଥିବାବେଳେ ସ୍ୱରାଜ ଆଶ୍ରମରେ ଓଡ଼ିଶା କଂଗ୍ରେସର ଆଦିନେତା ଭଗୀରଥି ମହାପାତ୍ର ସେତେବେଳେ କଂଗ୍ରେସର ମୁଖପତ୍ର ସ୍ୱରୂପ 'ଲୋକଶକ୍ତି' ନାମକ ଏକ ସାପ୍ତାହିକ ପ୍ରକାଶ କଲେ । ସେଥିରେ ମଧ୍ୟ ଭଗୀରଥି ବାବୁଙ୍କୁ ସହାୟତା କରିବାକୁ ଶାସ୍ତ୍ରୀଙ୍କୁ ରାତିରେ ୨।୩ ଘଣ୍ଟା ସମୟ ଦେବାକୁ ହେଉଥିଲା ।

ଏଥିସହ କେତେକ ଉଚ୍ଚଶିକ୍ଷିତ ସ୍ୱାଧୀନତା ସଂଗ୍ରାମୀ ଯେଉଁ ମାନଙ୍କର ଫରୱାର୍ଡ଼ ବ୍ଲକ୍ ସହ ସମ୍ପର୍କ ଥିଲା ସେମାନେ 'ଫ୍ରିଡ଼୍ ପ୍ରେସ' ନାମକ ଏକ ନ୍ୟୁଜ ଏଜେନ୍ସି କଲିକତାରେ ସ୍ଥାପନ କରିଥିଲେ ସେହି ଏଜେନ୍ସି ପାଇଁ କଟକର ସମ୍ବାଦଦାତା ରୂପେ ସେ ନିଯୁକ୍ତ ହୋଇଥିଲେ । ଶ୍ରୀ ବିବୁଧେନ୍ଦ୍ର ମିଶ୍ର ମଧ୍ୟ ଏହି ଏଜେନ୍ସିରେ କାର୍ଯ୍ୟକଲେ । ଶାସ୍ତ୍ରୀଙ୍କ ପାଖରେ ଥିବା ପୋର୍ଟେବଲ ଟାଇପରାଇଟରରେ ସେ ଇଂରାଜୀ ସମ୍ବାଦ ପ୍ରସ୍ତୁତ କରି ପ୍ରେରଣ କରୁଥିଲେ ।

ପ୍ରଜାତନ୍ତ୍ରର କାର୍ଯ୍ୟାଳୟ ବିହାରିବାଗକୁ ସ୍ଥାନାନ୍ତରିତ ହେବାପରେ ବହୁ ଉଚ୍ଚଶିକ୍ଷିତ ଯୁବକ ଏଥିରେ ଯୋଗ ଦେଇଥିଲେ । ସେମାନେ ହେଲେ, ସର୍ବଶ୍ରୀ ନୀଳମଣି ରାଉତରାୟ, ଜାନକୀ ବଲ୍ଲଭ ପଟ୍ଟନାୟକ, ଭୈରବ ଚନ୍ଦ୍ର ମହାନ୍ତି, ବୈଦ୍ୟନାଥ ମିଶ୍ର, ଚିନ୍ତାମଣି ପାଣିଗ୍ରାହୀ, ହୃଷୀକେଶ ରାୟ, ଚକ୍ରଧର ସାମଲ, ମିହିର ରାଓ ପ୍ରମୁଖ ।

## ଇଷ୍ଟର୍ଣ୍ଣ ଟାଇମ୍ସ ପ୍ରକାଶନ :

୧୯୪୯ର ଶେଷ ଭାଗରେ ମହତାବବାବୁ ଗୋଟିଏ ଇଂରାଜୀ ଦୈନିକ ପ୍ରକାଶନ ପାଇଁ ସ୍ଥିର କଲେ । ଶ୍ରୀ ଶାସ୍ତ୍ରୀଙ୍କ ପ୍ରସ୍ତାବକ୍ରମେ ତାର ନାମ ରଖାଗଲା ଇଷ୍ଟର୍ଣ୍ଣ ଟାଇମ୍ସ ।

ପର୍ଯ୍ୟବେକ୍ଷଣ ଯାଏ କେବଳ ପ୍ରକାଶନ ସମ୍ପର୍କରେ ପ୍ରଚୁର ଚାଲିଲା କିନ୍ତୁ ପ୍ରକାଶନ ହୋଇ ନ ପାରିବାରୁ ମହତାବବାବୁ ଏକ ବୈଠକ ଡାକି ଥିଲେ । ବୈଠକର ନିଷ୍ପତ୍ତି ସମ୍ପର୍କରେ ଶ୍ରୀ ଶାସ୍ତ୍ରୀ ଏକମତ ନହୋଇ ନିର୍ଦ୍ଧାରିତ କରିବାରେ

କହିଥିଲେ—'ଇଷ୍ଟର୍ଣ୍ଣ ଟାଇମ୍‌ସ' ପ୍ରକାଶନ ନହେଲେ 'ପ୍ରଜାତନ୍ତ୍ର' ଅନୁଷ୍ଠାନର ସୁନାମ ଉପରେ ଆଞ୍ଚ ଆସିବ ଓ ଏଥିସହ ଆପଣଙ୍କ ପ୍ରତିଷ୍ଠା କ୍ଷୁର୍ଣ୍ଣ ହେବାର ସମ୍ଭାବନା ଅଛି । ତା'ଛଡ଼ା ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଆମେ ଅପାରଗ ଭାବେ ଗଣ୍ୟ ହେବା ।

ମହତାବବାବୁ ଶ୍ରୀ ଶାସ୍ତ୍ରୀଙ୍କ ମତକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ପଚାରିଲେ—'ତମେ କଣ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ଦାୟିତ୍ୱ ନେଇ ପାରିବ ?' ଶ୍ରୀ ଶାସ୍ତ୍ରୀ କହିଥିଲେ ମୋ କାର୍ଯ୍ୟରେ ଯଦି କେହି ହସ୍ତକ୍ଷେପ ନ କରନ୍ତି ଏବଂ ଆବଶ୍ୟକ ତଥ୍ୟ ସଂଗ୍ରହ ପାଇଁ ଯଦି ଅର୍ଥର ବ୍ୟବସ୍ଥା ହୁଏ, ତେବେ ଦୁଇମାସ ଭିତରେ ଏହା ନିଶ୍ଚିତ ପ୍ରକାଶ ପାଇବ ।

ପ୍ରଜାତନ୍ତ୍ରରୁ ଅବ୍ୟାହତି ନେଇ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ରେ ପୂରା ସମୟ ଦେଇ କୋଡ଼ିଏ ଜଣ ଇଂରାଜି କମ୍ପୋଜିଟରଙ୍କୁ ବ୍ରହ୍ମପୁରରୁ ଆଣି ୧୯୪୮ ମସିହା ଅପ୍ରେଲ ପହିଲା ଓଡ଼ିଶା ପ୍ରଦେଶ ପ୍ରତିଷ୍ଠା ଦିବସ ଦିନ ପ୍ରଥମ ସଂଖ୍ୟା ପ୍ରକାଶ କରିବାକୁ ସମର୍ଥ ହୋଇଥିଲେ । ସେତେବେଳେ ଭୈରବ ମହାନ୍ତି ଥିଲେ 'ଇଷ୍ଟର୍ଣ୍ଣ ଟାଇମ୍‌ସ' ଓ 'ପ୍ରଜାତନ୍ତ୍ର'ର ସମ୍ପାଦକ ।

'ଇଷ୍ଟର୍ଣ୍ଣ ଟାଇମ୍‌ସ' ବାହାରିବା ପରେ ମହତାବବାବୁ ଖୁସି ହୋଇଥିଲେ ବି ଏହି ପ୍ରକାଶନ ଦାୟିତ୍ୱ ନେଇ ବ୍ୟର୍ଥ ହୋଇଥିବା ଲୋକଙ୍କ କଥାରେ ମହତାବବାବୁ ପ୍ରଭାବିତ ହୋଇ ଇଷ୍ଟର୍ଣ୍ଣ ଟାଇମ୍‌ସରୁ ଅବ୍ୟାହତି ଦେଇ ଶାସ୍ତ୍ରୀଙ୍କୁ 'ପ୍ରଜାତନ୍ତ୍ର' ଓ 'ଇଷ୍ଟର୍ଣ୍ଣ ଟାଇମ୍‌ସ'ର ଷ୍ଟାଫ୍ ରିପୋର୍ଟର ଦାୟିତ୍ୱ ତୁଲାଇବାକୁ ନିର୍ଦ୍ଦେଶ ଦେଲେ । ଏଥିପାଇଁ ସେ କିଛି ଅଧିକ ଅର୍ଥ ବ୍ୟବସ୍ଥା ମଧ୍ୟ କରିଥିଲେ ।

## ମହତାବଙ୍କ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଓ 'ନିଆ ଖୁଣ୍ଟା' ସମ୍ପାଦକଙ୍କୁ ମାଡ଼ :

୧୯୪୯ ମସିହା ନଭେମ୍ବର ମାସରେ ମହତାବବାବୁଙ୍କ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ପାଇଁ ବ୍ୟାପକ ଆୟୋଜନ ଚାଲିଥିଲା । ଏହା ଅତି ଆଡ଼ମ୍ବରପୂର୍ଣ୍ଣ ଭାବେ ହେବାପାଇଁ ଗଠିତ କମିଟିରେ ସଭାପତି ଥିଲେ ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟ । ରାଜକୀୟ ଢଙ୍ଗରେ ଲକ୍ଷେ ପଦ୍ମଫୁଲରେ ସଜ୍ଜିତ ଜାଗାରେ ମହତାବବାବୁଙ୍କୁ ଛତି, ଚାମର, ଢୋଲ, ଶଙ୍ଖ ଇତ୍ୟାଦି ସହ

ଭବ୍ୟ ମର୍ଯ୍ୟାଦା ଦିଆଯାଇଥିଲା । ଶୋଭାଯାତ୍ରାରେ ଭାଗ ନେଇଥିବା ସମସ୍ତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନାମ ଓ ଶୋଭାଯାତ୍ରାର ରିପୋର୍ଟିଂ ଦାୟିତ୍ୱ, ଶ୍ରୀ ଶାସ୍ତ୍ରୀଙ୍କ ଉପରେ ନ୍ୟସ୍ତ ଥିଲା ।

'ନିଆଁଖୁଣ୍ଟା'ରେ ମହତାବ ଜୟନ୍ତୀ ଉତ୍ସବ ନେଇ ସମ୍ପାଦକ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ କଟୁ ସମାଲୋଚନା ଯୋଗୁଁ ଚୌଧୁରୀବଜାରର କେତେକ ଗୁଣ୍ଡାଙ୍କ ଦ୍ୱାରା ଦରଘାବଜାରର ଏକ କଫି ହୋଟେଲରେ ତାଙ୍କୁ ପ୍ରବଳଭାବେ ମାଡ଼ ଦେଇ ରକ୍ତାକ୍ତ କରି ଦିଆଗଲା ।

ଲାଲବାଗ ଥାନାରେ ପୁଲିସ ତାଙ୍କ ଏତଲା ଗ୍ରହଣ ନ କରି କେବଳ ତାଏରି କରି ତାଙ୍କୁ ଫେରାଇ ଦେଇଥିଲେ । ନିରାଶ ହୋଇ ସେ ଆଡ଼ଭୋକେଟ କବି ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ସହାୟତାରେ ମାଜିଷ୍ଟ୍ରେଟ କୋର୍ଟରେ ମକଦ୍ଦମା ରୁଜୁ କରିଥିଲେ । ଶ୍ରୀଯୁକ୍ତ ସି. ବାମନ-ମୂର୍ତ୍ତି କଟକର ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଥିଲେ । ସେ ମକଦ୍ଦମାଟି ଗ୍ରହଣ କରି ଅପରାଧୀମାନଙ୍କୁ କୋର୍ଟରେ ହାଜର ହେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ବିଭିନ୍ନ ଉଚ୍ଚ ମହଲରୁ ଆସାମୀମାନଙ୍କୁ ଖଲାସ କରିଦେବା ପାଇଁ ଶ୍ରୀଯୁକ୍ତ ମୂର୍ତ୍ତିଙ୍କ ଉପରେ ଚାପ ପ୍ରୟୋଗ କରାଯାଇଥିଲେ ମଧ୍ୟ ସେ ପ୍ରଭାବିତ ନହୋଇ ଦୋଷୀମାନଙ୍କୁ ଜୋରିମାନା ଓ ଜେଲଦଣ୍ଡରେ ଦଣ୍ଡିତ କରିଥିଲେ ।

## କେନ୍ଦ୍ର ମନ୍ତ୍ରିମଣ୍ଡଳରେ ମହତାବଙ୍କ ଯୋଗଦାନ :

ମହତାବବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗଦେବା ପରେ ସ୍ୱରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋ ଓଡ଼ିଶା ମୁଖ୍ୟମନ୍ତ୍ରୀ ହେବା କଥା ।

ମହତାବବାବୁ ନିତ୍ୟାନନ୍ଦବାବୁଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ କରିବା ସପକ୍ଷରେ ନ ଥିବାରୁ ତାଙ୍କ ପ୍ରଚେଷ୍ଟାକୁ ପ୍ରତିହତ କରିବାଲାଗି ପଦକ୍ଷେପ ନିଆଯାଇଥିଲା । ଗୃହମନ୍ତ୍ରୀ ନିତ୍ୟାନନ୍ଦବାବୁଙ୍କ ବାଖରାବାଦସ୍ଥିତ ବାସ-ଭବନ ଉପରକୁ ଟେକାପଥର ମାଡ଼ ହେଉଥିଲେହେଁ ପୁଲିସ ତାଙ୍କୁ କୌଣସି ସାହାଯ୍ୟ କରି ନଥିଲେ । ଏ ସମ୍ପର୍କରେ ଶ୍ରୀ ଶାସ୍ତ୍ରୀ ଅଚ୍ୟୁ, ଜ. ଶ୍ରୀ ବି. ରାୟଙ୍କୁ ପତ୍ରିକା ପ୍ରଜାତନ୍ତ୍ରରେ ସେ ସମ୍ବାଦ ପ୍ରକାଶ କରିଥିଲେ ।

## ଅନୁଗୁଳର ରନ୍ତଲେଇ ବାବାଙ୍କ ହୁକୁମ ଓ ଫଳାଫଳ :

୧୯୫୦ରେ ମହତାବବାବୁ କେନ୍ଦ୍ରମନ୍ତ୍ରୀ ଭାବେ ନେହେରୁ ମନ୍ତ୍ରିମଣ୍ଡଳରେ ଯୋଗ ଦେବାପରେ ଶ୍ରୀ ନବକୃଷ୍ଣ ଚୌଧୁରୀ ପୁତ୍ରଶୋକରେ ଅଧୀର ହୋଇ ମନ୍ତ୍ରୀତ୍ୱରୁ ଇସ୍ତଫା ଦେଇ ଅନୁଗୁଳ ଚାଲିଯାଇ ଥିବାରୁ ତାଙ୍କୁ ପ୍ରବର୍ତ୍ତାଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦିଆଗଲା । ମୁଖ୍ୟମନ୍ତ୍ରୀ ହେଲେହେଁ ନବବାବୁ ପ୍ରଶାସନିକ କାର୍ଯ୍ୟ ଚଳାଇବାରେ ବିଶେଷ ଅସୁବିଧା ଉପୁଜୁଥିଲା । ସେ ମୁଖ୍ୟମନ୍ତ୍ରୀ ହେବା ପରେ ପରେ ଅନୁଗୁଳର ରନ୍ତଲେଇ ପାହାଡ଼ରେ ଚତୁର ବ୍ୟବସାୟୀମାନେ କୌଶଳ କରି ଜଣେ ଗାଞ୍ଜଖିଆ ପିଲାକୁ ନେପାଳୀବାବା ଆଖ୍ୟା ଦେଇ ପାହାଡ଼ ଉପରେ ବସାଇ ହୁକୁମ ଔଷଧ ବାଣ୍ଟିବା ଆରମ୍ଭ କରିଦେଲେ ।

ଦେଶର ବିଭିନ୍ନ ପ୍ରାନ୍ତରୁ ଧନୀ ଗରିବ ଧର୍ମଭୀରୁ ଲୋକଙ୍କ ସୁଅ ଛୁଟିଲା । ଏଇ ମଉକାରେ ବହୁ ଅସାଧୁ ଲୋକ ଓ ଡାକ୍ତରମାନେ ହୁକୁମ ନାଁରେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିବାର ସୁଯୋଗ ପାଇଥିଲେ । ପାହାଡ଼ଟାରେ କୌଣସି ପ୍ରକାର ପାଣିପୁଜଳ ଓ ପରିମଳର ବ୍ୟବସ୍ଥା ନଥିବାରୁ ଦୂଷିତ ଜଳ ଓ ଅଖାଦ୍ୟଖାଇ ଶହ ଶହ ଲୋକ ପୋକମାଛି ପରି ମରିଥିଲେ ।

ଶ୍ରୀ ଶାସ୍ତ୍ରୀ ସେହି ନେପାଳୀବାବା ହୁକୁମ ବିରୁଦ୍ଧରେ ସମ୍ବାଦ ଓ ସମାଲୋଚନା ଲେଖିଥିଲେ । କେତେକ ସରକାରୀ କର୍ମଚାରୀ ଏପରିକି ଜଣେ ଅଧ୍ୟ ବଚୁରପତି ଏହି ହୁକୁମ ଔଷଧ ଆଣି ସେବନ କରିଥିବାର ଦୃଷ୍ଟାନ୍ତ ଥିଲା ।

ବରିଷ୍ଠ କବି ଲେଖକ ସ୍ୱର୍ଗତ ବଇକୁଣ୍ଠଚରଣ ପଟ୍ଟନାୟକ ମଧ୍ୟ ଟ୍ରେଷ୍ଟାଗୋଡ଼ରେ ଶକ୍ତି ପାଇ ଚାଲିପାରୁଛନ୍ତି ବୋଲି ସମ୍ବାଦ ପ୍ରଚାର ହେବାରୁ ଶୁଭକାଂକ୍ଷୀମାନେ ଟ୍ରେଷ୍ଟାଗୋଡ଼ରେ ସେ କିପରି ଚାଲିପାରୁଛନ୍ତି ଦେଖିବାପାଇଁ ତାଙ୍କ ଘରକୁ ଆସିଥିଲେ । କିନ୍ତୁ ସେ ଚାଲିବାଟା ଥିଲା ଖାଲି ପ୍ରହସନ । ଶ୍ରୀଯୁକ୍ତ ଶାସ୍ତ୍ରୀ କହିଥିଲେ—"ଟ୍ରେଷ୍ଟା ବୋଲଇ ଅନ୍ଧ ଭାଇ, ଅଧିକ ଚାଲି ନ ପାରଇ ।" ପରିହାସପ୍ରେମୀ ବଇକୁଣ୍ଠବାବୁ ହସି ହସି ଚୌକିରେ ବସି ପଡ଼ିଥିଲେ ।

କଟକ ରେଲଷ୍ଟେସନରେ ମାଲଗାଡ଼ିରେ ଯେତେବେଳେ ଚନ୍ଦନଲଲରର ମହାମାରୀ ଶବ ବୁହାହୋଇ ଆସିଲା ଏହା ଏକ କଷିଢାଞ୍ଚକ ହୋଇ ପଡ଼ିଥିଲା । କାଳିଆବୋଦା ଶ୍ମଶାନରେ ବଡ଼ ବଡ଼ ଗାତ ଖୋଳି ଦାହ କରାଯାଇଥିଲା ।

ଏହି ଅସମୟରେ ଶ୍ରୀ ଶାସ୍ତ୍ରୀ ତାଙ୍କ ସାମ୍ବାଦିକ ବନ୍ଧୁ ଶଚୀନ ଦତ୍ତ ସେତେବେଳର କଲେକ୍ଟର ମନ ଗୁହଙ୍କ ସହ ଘଟଣାସ୍ଥଳକୁ ଯାଇ ସମସ୍ତ ବିବରଣୀ, 'ପ୍ରଜାତନ୍ତ୍ର', 'ଇଷ୍ଟର୍ଣ୍ଣ ଟାଇମ୍ସ' ଓ 'ଅମୃତ ବଜାର ପତ୍ରିକା'ରେ ପ୍ରକାଶ କରିଥିଲେ ।

## କାଳିଆବୋଦା ମଠରୁ ଯୁବତୀ, ମଦ ଓ ଶୁଖୁଆ ଜବତ :

୧୯୫୪ ମସିହା ଜୁନ୍ ମାସରେ ସେ 'ମାତୃଭୂମି'ରେ ଯୋଗ ଦେଇଥିଲେ । 'ମାତୃଭୂମି' ସେତେବେଳେ ରାଜାମହାରାଜାମାନଙ୍କ ଗଣତନ୍ତ୍ର ପରିଷଦର ମୁଖପତ୍ର ଥିଲା ।

ଏହି ସମୟରେ କାଳିଆବୋଦା ମଠ ଉପରେ ଅନେକ ଚଢାଉ କରି ପୋଲିସ ମଦ ଓ ଶୁଖୁଆ ଜବତ କରିବା ସହ ଅପହୃତା ଯୁବତୀଙ୍କୁ ଉଦ୍ଧାର କରିଥିଲେ । ଏହି ସମ୍ବାଦ ଓଡ଼ିଶାରେ ହଲଚଲ ପକେଇଥିଲା । ପାଗଳାବାବାଙ୍କ ସହ ଅନ୍ୟବାବାମାନେ ଗିରଫ ହୋଇଥିଲେ ମଧ୍ୟ ପାଗଳାବାବା ଆଗେ ଖଲାସ ହୋଇଗଲେ । କାରଣ ସହରରେ ପ୍ରତିଷ୍ଠିତ ବ୍ୟକ୍ତିମାନେ ଥିଲେ ତାଙ୍କର ଅନୁଗତ ।

## ପାରଳାଖେମୁଣ୍ଡିରେ ଓଡ଼ିଆଙ୍କ ଉପରେ ଆକ୍ରମଣ :

ପାରଳାଖେମୁଣ୍ଡିଠାରେ ୧୯୫୪ ମସିହାରେ ଜଣେ ଆନ୍ଧ୍ର-ପ୍ରଦେଶର ନେତାଙ୍କ ଦ୍ୱାରା ଓଡ଼ିଆ ଭାଇମାନଙ୍କୁ ଯେଉଁ ନିର୍ମମ ଆକ୍ରମଣ କରାଯାଇଥିଲା ତାହା ଅତ୍ୟନ୍ତ ଦୁଃଖଦାୟକ । ଆନ୍ଧ୍ରର ଶହଶହ ଗୁଣ୍ଡା ଆସି ଅନେକ ଓଡ଼ିଆମାନଙ୍କୁ ମାଡ଼ଦେଇ ତାଙ୍କର ସମ୍ପତ୍ତି ଲୁଟ କରି ଘରେ ନିଆଁ ଲଗାଇ ଦେଇଥିଲେ । ସେଠାରେ ଥିବା ତେଲୁଗୁମାନେ ମଧ୍ୟ ଏହି ଅନ୍ୟାୟ ଆକ୍ରମଣକୁ ନୀରବରେ ସମର୍ଥନ କରିଥିଲେ ।

ଘଟଣା ଧୀରେ ଧୀରେ ପ୍ରବଳ ଆକାର ଧାରଣ କରିବାରୁ କଟକରୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ନେତୃତ୍ୱରେ ଏକ ସାମ୍ବାଦିକ ପ୍ରତିନିଧି ଦଳ ସେଠାକୁ ଯାଇଥିଲେ । ସେହି ଦଳରେ ମୁଖ୍ୟ ଭୂମିକା ନେଇ ଶ୍ରୀ ଶାସ୍ତ୍ରୀ ଘର ଘର ବୁଲି ସମସ୍ତ ଘଟଣା ସହ ଓଡ଼ିଆ ଓ ତେଲଗୁ ଘରର କ୍ଷୟକ୍ଷତିର ବିବରଣୀ କଟକକୁ ତାରବାର୍ତ୍ତାରେ ପଠାଇବାକୁ ଯେତେ ଉଦ୍ୟମ କଲେ ମଧ୍ୟ ପାରଳାଖେମୁଣ୍ଡିର ତେଲଗୁ ପୋଷ୍ଟମାଷ୍ଟର ଓ ଟେଲିଗ୍ରାଫ୍ କାଉଣ୍ଟର କ୍ଲର୍କ ସେହି ଟେଲିଗ୍ରାମଗୁଡ଼ିକୁ ଗ୍ରହଣ ନକରି ଫେରାଇ ଦେଇଥିଲେ ।

ଦୁଃଖର କଥା ସେତେବେଳେ ରାଧାନାଥ ରଥ ଚୌଧୁରୀ ମନ୍ତ୍ରି-ମଣ୍ଡଳରେ ବରିଷ୍ଠ ମନ୍ତ୍ରୀଥାଇ ମଧ୍ୟ ଏଥିପାଇଁ କୌଣସି ପଦକ୍ଷେପ ନେଇ ନଥିଲେ । ଆନ୍ଧ୍ରକେଶରୀ ଶ୍ରୀ ଟି. ପ୍ରକାଶମ୍ ମାନ୍ଦ୍ରାଜରୁ ଆସି ଉଭୟ ଓଡ଼ିଆ ଓ ତେଲୁଗୁ ଭାଷୀଙ୍କୁ ସାନ୍ତ୍ୱନା ଓ ସହାନୁଭୂତି ସହ ଘଟଣାର ତଦନ୍ତ କରିଥିଲେ ଅଥଚ ଆମ ଓଡ଼ିଶାରେ ଘଟିଥିବା ଘଟଣା ସମ୍ପର୍କରେ କେହି ଜଣେ ହେଲେ ମନ୍ତ୍ରୀ ବିପନ୍ନଙ୍କୁ ସାହାଯ୍ୟ ତ ଦୂରର କଥା ଦେଖିବାପାଇଁ ସୁଦ୍ଧା ଯାଇ ନଥିଲେ । ଉତ୍କଳକେଶରୀ ମହତାବ ପାରଳା ଯିବାପାଇଁ ବାହାରି ଛତ୍ରପୁରଠାରୁ ଫେରିଆସିଥିଲେ ।

'ନୂଆଁଖୁଣ୍ଟା', 'ସମାଜ'ରେ ଓ 'ଅମୃତବଜାର' ପତ୍ରିକାରେ ଶ୍ରୀ ଶାସ୍ତ୍ରୀ ପଠାଇଥିବା ସମ୍ବାଦ ପ୍ରକାଶ ପାଇଥିଲା ଏବଂ ସେ ନିଜେ 'ମାତୃଭୂମି'ରେ ସମ୍ପୂର୍ଣ୍ଣ ବିବରଣୀ ସହ ଆନ୍ଧ୍ରକେଶରୀଙ୍କର ବ୍ରହ୍ମପୁର ଟାଉନହଲରେ ଦେଇଥିବା ଭାଷଣ ଓ ଓଡ଼ିଶା କେଶରୀଙ୍କର ଅଧାବାଟରୁ ପ୍ରତ୍ୟାବର୍ତ୍ତନ ବିଷୟ ଲେଖିଥିଲେ ।

## ଓଡ଼ିଶାରେ ସୀମା ଅନ୍ଦୋଳନ :

୧୯୫୬ ମସିହାରେ ଓଡ଼ିଶାରେ ସୀମାଆନ୍ଦୋଳନ ବ୍ୟାପକ ଓ ତୀବ୍ରତର ହୋଇଥିଲା । ରାଜ୍ୟବ୍ୟାପୀ ଆନ୍ଦୋଳନ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଆହ୍ୱାନ ଦେଇଥିଲେ ।

କଂଗ୍ରେସର ସମସ୍ତ ଏମ୍. ଏଲ୍. ଏ. ଓ ମନ୍ତ୍ରୀମାନେ ପ୍ରଥମେ ଇସ୍ତଫା ଦେବାପରେ ବିରୋଧୀଦଳର ଏମ୍. ଏଲ୍. ଏ. ମାନେ ଓ ବାଚସ୍ପତି ଶ୍ରୀ ନନ୍ଦକିଶୋର ଦାସ ମଧ୍ୟ ଇସ୍ତଫା ଦେଇଥିଲେ ।

ସେହି ଇସ୍ତଫାପତ୍ର ସବୁ ଧରି ବିଶ୍ୱନାଥ ଦାସ ଦିଲ୍ଲୀଯାତ୍ରା କରିଥିଲେ । ସେ କଟକ ବେଲ୍‌ଷ୍ଟେସନରେ ପହଞ୍ଚି କଟକ ବଗିରେ ବସିଲାବେଳକୁ 'ମାତୃଭୂମି'ର ହକର "ସ୍ୱରାଜ ଆଶ୍ରମରେ କୋଟ ପକେଟରେ ଇସ୍ତଫାପତ୍ର ରଖି ବିଶ୍ୱନାଥ ଦାସଙ୍କ ଦିଲ୍ଲୀ ଯାତ୍ରା" କହି କାଗଜବିକ୍ରୀ କରିବା ଆରମ୍ଭ କରିଦେଇଥିଲା । ବିଶ୍ୱନାଥ ଦାସ ହଠାତ୍ ନିଜ କୋଟ ପକେଟ ଖୋଜି ଦେଖନ୍ତି ତ ସେ ଇସ୍ତଫାପତ୍ର ପ୍ୟାକେଟଟି ନାହିଁ, ସ୍ୱରାଜ ଆଶ୍ରମରେ ଅନ୍ୟ ଏକ କୋଟ ପକେଟରେ ରହିଯାଇଛି । ସଙ୍ଗେ ସଙ୍ଗେ ଜିପ୍ ପଠେଇ ସେସବୁକୁ ଅଣାଯାଇଥିଲା ।

ନେହେରୁଙ୍କୁ ଭେଟି ବିଶ୍ୱନାଥ ବାବୁ ଓଡ଼ିଶାର ସମୂହ ଇସ୍ତଫାପତ୍ର ଉପସ୍ଥାପନା କଲେ । ନେହେରୁ ରାଗରେ ଲାଲହୋଇ କହିଥିଲେ— "ଏ କଣ ତାମସା ଚାଲିଛି ? ଚାଲିଯାଅ । ଇସ୍ତଫାପତ୍ର ଫେରାଇଦିଅ ।" ନିର୍ବାକ ହୋଇ ସେ ଫେରିଆସିଥିଲେ ଓଡ଼ିଶା ।

ଓଡ଼ିଶାରେ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଆନ୍ଦୋଳନ ଆରମ୍ଭ ହେଲା । ପୁଲିସର ଗୁଳିମାଡ଼ରେ ସୁଶୀଲ ଦେ' ନାମକ ଜଣେ ଛାତ୍ରର ମୃତ୍ୟୁ ହେଲା । କଟକରେ ଆନ୍ଦୋଳନ ଦମନ କରିବା ଅଣାୟତ୍ତ ହେବାରୁ ସୈନ୍ୟବାହିନୀ ଅଣାଗଲା ।

ଆନ୍ଦୋଳନକାରୀମାନେ ବରିଷ୍ଠ ମନ୍ତ୍ରୀ ରାଧାନାଥ ରଥଙ୍କ ପୁରୁଣା କଲେଜଗଳି ଘର ଓ ସମାଜ ଅଫିସକୁ ଘେରାଉ କରି ରଖିଥାନ୍ତି । ରାଧାନାଥବାବୁ ଘର ପଛବାଟେ ଖସିଯାଇ ଲାଲବାଗସ୍ଥିତ ରାଜଭବନରେ ଆଶ୍ରୟ ନେଇଥିଲେ ।

ରେଡ଼ିଓ ଷ୍ଟେସନ ଯାଇ ବହୁ ତଥ୍ୟ ସଂଗ୍ରହ ପରେ ମେଡ଼ିକାଲରୁ ଆହତଙ୍କ ସମ୍ପର୍କରେ ଶ୍ରୀ ଶାସ୍ତ୍ରୀ ମାତୃଭୂମିରେ ପ୍ରକାଶ କରିଥିଲେ । ଖୁବ୍ ଶୀଘ୍ର ସେମାନଙ୍କୁ ଖଲାସ କରାଯାଇଥିଲା ।

କଟକରେ ଗୁଳିକାଣ୍ଡରେ ମୃତ ସୁଶୀଲ ଦେଙ୍କ ଶବଯାତ୍ରା ସଞ୍ଚାଳିତ ହେବାରୁ ନିଆଗଲେ ପରିସ୍ଥିତି ଭୟାବହ ହେବା ଦୃଷ୍ଟିରୁ ଖାନନଗର ନେଇ ଶାନ୍ତିପୂର୍ଣ୍ଣଭାବେ ଦାହ କରାଗଲା । କଟକର ଉତ୍ତେଜନାପୂର୍ଣ୍ଣ ପରିସ୍ଥିତି ଦୁଇଦିନ ଭିତରେ ଶାନ୍ତ ହୋଇଯିବାରୁ ସୈନ୍ୟବାହିନୀ ମଧ୍ୟ ପ୍ରତ୍ୟାହୃତ ହୋଇଥିଲେ ।

ସୀମାଆନ୍ଦୋଳନ ବେଳେ ତୁଙ୍ଗ ନେତାମାନଙ୍କର ଗିରଫଦାରୀ ସମ୍ପର୍କରେ ଶାସ୍ତ୍ରୀ ମାତୃଭୂମି'ରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅମୃତ-ବଜାର ପତ୍ରିକାରେ ପ୍ରକାଶନ ପାଇଁ ଶଚୀନବାବୁଙ୍କୁ ଟେଲିଫୋନ ଯୋଗେ ଜଣାଇଥିଲେ ।

ଏହି ଘଟଣା ପରେ ପରେ ନବକୃଷ୍ଣ ଚୌଧୁରୀ ସରକାରୀ କ୍ଷମତାରୁ ଓହରିଯାଇ କୋରାପୁଟରେ ସର୍ବୋଦୟ କାର୍ଯ୍ୟ ଆରମ୍ଭ କରିଥିଲେ । ବମ୍ବେର ରାଜ୍ୟପାଳ ପଦରୁ ହରେକୃଷ୍ଣ ମହତାବଙ୍କୁ ଫେରସ୍ତ ଅଣାଯାଇ ୧୯୫୬ ମସିହା ଅକ୍ଟୋବର ୧୯ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ଅବସ୍ଥାପିତ କରାଯାଇଥିଲା ଏବଂ ଶ୍ରୀ ନବବାବୁ ତତ୍କାଳୀନ ଆସେମ୍ବ୍ଲି ସର୍ଦ୍ଦାର ପଟେଲ ହଲ୍‌ଠାରୁ ନିଜ ବାସଭବନକୁ ଚାଲି ଚାଲି ଯାଇଥିଲେ । ଶ୍ରୀ ଶାସ୍ତ୍ରୀ ମଧ୍ୟ ତାଙ୍କ ସହିତ ଚାଲି ଚାଲି ତାଙ୍କ ବାସଭବନକୁ ଗଲେ । ନିଜ ଗାଡ଼ିଟି ବିକ୍ରୀକରି ତାଙ୍କ ଉପରେ ବାକି ଥିବା ସରକାରୀ ଋଣ ସେ ପରିଶୋଧ କରିଥିଲେ । ସେ ସମସ୍ତ ଘଟଣା ଶ୍ରୀ ଶାସ୍ତ୍ରୀ 'ମାତୃଭୂମି'ରେ ପ୍ରକାଶ କରିଥିଲେ ।

## କଂଗ୍ରେସର ବିପର୍ଯ୍ୟୟ ଓ ମହତାବଙ୍କ ମନ୍ତ୍ରିମଣ୍ଡଳ ଗଠନ :

୧୯୫୭ ମସିହା ସାଧାରଣ ନିର୍ବାଚନରେ କଂଗ୍ରେସ ଦଳର ଚରମ ପରାଜୟ ଘଟିଥିଲା । ୧୪୦ଟି ଆସନରୁ କଂଗ୍ରେସ ଦଳ ମାତ୍ର ୫୬ଟି ଆସନ ଲାଭ କରିଥିବାବେଳେ ଗଣତନ୍ତ୍ର ପରିଷଦ ୫୧ ଓ ପ୍ରଜା ସୋସାଲିଷ୍ଟ ୧୧ଟି ଆସନ ଲାଭ କରିଥିଲେ । ପ୍ରଜାସୋସାଲିଷ୍ଟ ନେତା ରବୀନ୍ଦ୍ର ମୋହନ ଦାସ ଏବଂ ଗଣତନ୍ତ୍ର ପରିଷଦ ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏକ ମିଳିତ ପତ୍ର ପ୍ରକାଶ କରିଥିଲେ । ଏହି ଦଳର ନେତାମାନେ ଝାଡ଼ଖଣ୍ଡ ଦଳର ୪ଜଣ ସଭ୍ୟ ଓ ଜଣେ ସ୍ୱାଧୀନ ସଭ୍ୟଙ୍କ ସାହାଯ୍ୟରେ ସରକାର ଗଢ଼ିବା ପାଇଁ ମସୁଧା କରୁଥିବା ବେଳେ ଗଣତନ୍ତ୍ର ପରିଷଦର ୪ଜଣ ଦୁର୍ବଳମନା ସଭ୍ୟଙ୍କୁ ପ୍ରଚୁର ଅର୍ଥଦେଇ କଂଗ୍ରେସକୁ ଟାଣି ନେଇଥିଲେ । ଝାଡ଼ଖଣ୍ଡ ନେତା ଜୟପାଳ ସିଂହଙ୍କୁ ରାଜା ମହାରାଜାମାନେ କଟକ ସର୍କିଟ ହାଉସରେ ରଖିଥିଲେ । କିନ୍ତୁ ସେ ବିଜୁ ପଟ୍ଟନାୟକଙ୍କ ସଂସ୍ପର୍ଶରେ ଆସି ତାଙ୍କ ତୁଳସୀପୁର ବାସ ଭବନରେ

ଆପ୍ୟାୟିତ ହୋଇ କଂଗ୍ରେସକୁ ସମର୍ଥନ ଜଣାଇଥିଲେ । ସେହିପରି କମ୍ୟୁନିଷ୍ଟ ନେତା ଶ୍ରୀ ରାମମୂର୍ତ୍ତି କଟକରେ ବିଜୁବାବୁଙ୍କୁ ଭେଟି ତାଙ୍କର ୯ଜଣ ସଭ୍ୟଙ୍କ ସମର୍ଥନ ଘୋଷଣା କଲା ବେଳେ ଶ୍ରୀ ଶାସ୍ତ୍ରୀ ସେଠାରେ ଉପସ୍ଥିତ ଥିଲେ ।

'ଗଣତନ୍ତ୍ର'ରେ ଶ୍ରୀ ଶାସ୍ତ୍ରୀ ଉପରୋକ୍ତ ଘଟଣାବଳୀର ବିଶଦ ବ୍ୟାଖ୍ୟା କରି 'ରାଜନୈତିକ ଘୋଡ଼ା ବେପାର' ଶିରୋନାମାରେ କଂଗ୍ରେସ କିପରି ଅଣ୍ଟା ଭିଡ଼ିଲା ତାହା ପ୍ରକାଶ କରିଥିଲେ । କଂଗ୍ରେସକୁ ମନ୍ତ୍ରୀମଣ୍ଡଳ ଗଢ଼ିବା ପାଇଁ ରାଜ୍ୟପାଳ ଯଶୋବନ୍ତ ନାରାୟଣ ସୁଖଠଣକର ଆହ୍ୱାନ କରିଥିଲେ । ଶ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ଖଦିର ଲୁଗା ଓ ଶିରୀ ପଞ୍ଜାବୀ ପିନ୍ଧି ତାଙ୍କୁ ଗଣତନ୍ତ୍ର ପରିଷଦ କିପରି ବର୍ବର ଆକ୍ରମଣ କରିଥିଲେ ତାହା ବିସ୍ତାର ସହିତରେ ବର୍ଣ୍ଣନା କରିଥିଲେ । ଘରୋଇ ବିଭାଗ ମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କ କାର୍ଯ୍ୟାନୁଷ୍ଠାନ ଦ୍ୱାରା ପାଟଣା ମହାରାଜା ଓ ଗାଙ୍ଗପୁର ରାଜାଙ୍କୁ ଛାଡ଼ି କଳାହାଣ୍ଡି ମହାରାଜାଙ୍କ ସମେତ ସମସ୍ତଙ୍କୁ ଗିରଫ କରାଯାଇ ଖୋର୍ଦ୍ଧା ଜେଲରେ ରଖାଯାଇଥିଲା ।

ଦୁଇଦିନ ପରେ ଚାର୍ଜସିଟ ନ ଥିବାରୁ ବିଚାରପତି ଗୋପାଳଚନ୍ଦ୍ର ଦାସ ସମସ୍ତଙ୍କୁ ଖଲାସ କରି ଦେଇଥିଲେ ।

ଘଟଣାର ପରିସମାପ୍ତି ନଘଟି ଏହା ପ୍ରବଳ ହେଲା । ସେମାନେ ଖୋର୍ଦ୍ଧା ଜେଲରୁ ଆସି ଭୁବନେଶ୍ୱରରେ ପହଞ୍ଚିବା ପରେ କଟକର ବିଭିନ୍ନ ବଜାରରୁ ଗୁଣ୍ଡାମାନେ ସ୍ୱତନ୍ତ୍ର ବସରେ ଭୁବନେଶ୍ୱରରେ ପହଞ୍ଚି ଗଣତନ୍ତ୍ର ପରିଷଦର ପ୍ରାୟ ସମସ୍ତ ସଭ୍ୟଙ୍କୁ ପ୍ରବଳ ମାଡ଼ ଦେଇଥିଲେ । ପାଟଣା ମହାରାଜା ଏ ଘଟଣାରେ ବିଚଳିତ ହୋଇ ପଡ଼ିବା ସମୟରେ ଶ୍ରୀ ଶାସ୍ତ୍ରୀ ସେଠାରେ ପହଞ୍ଚି ସମସ୍ତ ତଥ୍ୟ ସଂଗ୍ରହ କରି ଗଣତନ୍ତ୍ରରେ ପ୍ରକାଶ କରିଥିଲେ ଏବଂ ତାର ବାର୍ତ୍ତାରେ ନେହେରୁଙ୍କୁ ସବୁ ଜଣାଇ ତାଙ୍କର ପରାମର୍ଶ ପାଇଁ ପ୍ରସ୍ତାବ ଦେଇଥିଲେ ।

ପଣ୍ଡିତ ନେହେରୁ ତାରବାର୍ତ୍ତା ପାଇବା ପରେ ଅତ୍ୟନ୍ତ ବିରକ୍ତ ହୋଇ ରାଜ୍ୟପାଳଙ୍କୁ କହିଥିଲେ "ମୁଁ ଓଡ଼ିଶାରେ କଂଗ୍ରେସର ଏପରି ମନ୍ତ୍ରିମଣ୍ଡଳ ଚାହେଁ ନାହିଁ, ମହତାବଙ୍କୁ ଇସ୍ତଫା ଦେବା ପାଇଁ ଶୀଘ୍ର ପରାମର୍ଶ ଦିଅ ଏବଂ ଏ ତାମସା ବନ୍ଦ କର ।" ଏ ସମ୍ବାଦ ଗଣତନ୍ତ୍ରରେ ସେ

ପ୍ରକାଶ କରିବା ପରେ ମହତାବବାବୁ ଏହି ମନ୍ତ୍ରିମଣ୍ଡଳ ଗଢ଼ିଥିଲେ । ଏହି ମନ୍ତ୍ରିମଣ୍ଡଳରେ ରାଧାନାଥ ରଥ, ଲିଙ୍ଗରାଜ ପାଣିଗ୍ରାହୀ, ଖଲ୍ଲିକୋଟ ରାଜା ବାହାଦୁର ରାମଚନ୍ଦ୍ର ମର୍ଦ୍ଦରାଜ, କନିକା ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ, ଖଡ଼ିଆଳ ରାଜା ଅନୁପ ସିଂହଦେଓ, ରଣପୁର ରାଜମାତା ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ ଓ ଦଶପଲ୍ଲା ରାଜା କିଶୋରଚନ୍ଦ୍ର ଦେଓଭଞ୍ଜ ମନ୍ତ୍ରୀ ଥିଲେ । ଏହି ମନ୍ତ୍ରିମଣ୍ଡଳର ଅନେକ ଦୁର୍ନୀତି ବିଷୟରେ ସେ ବିଭିନ୍ନ ସମୟରେ ଗଣତନ୍ତ୍ରରେ ପ୍ରକାଶ କରିଥିଲେ । ଦୈନିକ ଗଣତନ୍ତ୍ରରେ ବିଧାନସଭା ସମୀକ୍ଷା ପ୍ରକାଶ କରିବାର ଦାୟିତ୍ୱ ମଧ୍ୟ ଶାସ୍ତ୍ରୀଙ୍କ ଉପରେ ନ୍ୟସ୍ତ ଥିଲା । କେଉଁଝରର ନୋମାଇଟ ଖଣି ମାଲିକଙ୍କଠାରୁ ମହତାବବାବୁ ଟଙ୍କା ନେବା ସମ୍ବାଦ ପ୍ରକାଶ କରି ସେ ଚାଞ୍ଚଲ୍ୟ ସୃଷ୍ଟି କରି ପାରିଥିଲେ ।

## ମହତାବ-ମହାରାଜା ମିଳିତ ମନ୍ତ୍ରିମଣ୍ଡଳ :

ଏହାପରେ ବିଜୁବାବୁ କଂଗ୍ରେସ, ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପାଇଁ ମହାରାଜାଙ୍କ କୋଠିକୁ ଯାଇ ଆଲୋଚନା କରିଥିଲେ । ବିଜୁବାବୁ ଶ୍ରୀ ଶାସ୍ତ୍ରୀଙ୍କୁ ଦେଖି ହସି ହସି ପଚାରିଥିଲେ— What are you wishing for ? ସେ କହିଥିଲେ—Your very presence here is a big head line news what else is needed. ମହାରାଜା ବିଜୁବାବୁଙ୍କୁ କହିଥିଲେ ମୁଁ ସେମାନଙ୍କୁ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ କରିଛି ।

ଓଡ଼ିଶାରେ କଂଗ୍ରେସ ଓ ଗଣତନ୍ତ୍ର ପରିଷଦ ମନ୍ତ୍ରିମଣ୍ଡଳ ଗଠନ ସମ୍ପର୍କରେ ଶ୍ରୀ ଶାସ୍ତ୍ରୀ 'ଗଣତନ୍ତ୍ର', 'ଅମୃତ ବଜାର ପତ୍ରିକା' ଓ 'ଯୁଗାନ୍ତର'ରେ ପ୍ରଥମେ ପ୍ରକାଶ କରିଥିଲେ ।

ମାତ୍ର ୨୧ ମାସ ପରେ ବିଜୁବାବୁ ଏହି ମନ୍ତ୍ରୀମଣ୍ଡଳକୁ ଗାଦିଚ୍ୟୁତ କରାଇ ୧୯୬୧ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ ଦଳର ପୂର୍ବ-ଗୌରବ ଫେରାଇ ଆଣି ମୁଖ୍ୟମନ୍ତ୍ରୀ ହୋଇଥିଲେ ।

## 'ଓଡ଼ିଶା ଟାଇମ୍‌ସ'ର ସାପ୍ତାହିକ ପ୍ରକାଶନ :

'ଗଣତନ୍ତ୍ର' ଛାଡ଼ିଲା ପରେ ଶ୍ରୀ ଶାସ୍ତ୍ରୀ 'ଓଡ଼ିଶା ଟାଇମ୍‌ସ' ନାମକ ଏକ ଇଂରାଜୀ ସାପ୍ତାହିକ ପ୍ରକାଶ କରିଥିଲେ । ଓଡ଼ିଆ ଓ ଇଂରାଜୀ ଦୁଇଟି

ପତ୍ରିକା ପ୍ରକାଶ କଲେ । ଦୈନିକ 'ଜନଶକ୍ତି'ର ବାର୍ତ୍ତା ସମ୍ପାଦକ ଭାବେ ଦୁଇବର୍ଷ କାମ କଲାପରେ 'Universal Press Service'ର କଟକ ପ୍ରତିନିଧି ଭାବରେ ଯୋଗ ଦେଇଥିଲେ ।

୧୯୬୮-୬୯ରେ 'ସ୍ୱରାଜ'ର କାର୍ଯ୍ୟକାରୀ ସମ୍ପାଦକ ଭାବରେ ଦୁଇବର୍ଷ କାର୍ଯ୍ୟ କରିବା ପରେ 'ଗଣତନ୍ତ୍ର ପରିଷଦ'ର କେତେକ ଲୋକ ପ୍ରତିନିଧି ଏକ ଚୁନୀ ଅପହରଣ ମାମଲାରେ ସମ୍ପୃକ୍ତ ସମ୍ବାଦ ପ୍ରକାଶନରେ ମତଭେଦ କାରଣରୁ ସେ ସେଠାରୁ ବିଦାୟ ନେଇଥିଲେ । ତା' ପରଠାରୁ ନିୟମିତ ଭାବେ ଇଂରାଜ ଦୈନିକ 'ଓଡ଼ିଶା ଟାଇମ୍ସ'ର ସମ୍ପାଦକ ରୂପେ ଶ୍ରୀ ଶାସ୍ତ୍ରୀ ବର୍ତ୍ତମାନ ପର୍ଯ୍ୟନ୍ତ କାର୍ଯ୍ୟରତ ।

ଏଥି ସହ ଉତ୍କଳ ସାମ୍ବାଦିକ ସଂଘର ପ୍ରତିଷ୍ଠାତା ସଭ୍ୟ, କଟକ ପ୍ରେସ କ୍ଲବର ପ୍ରତିଷ୍ଠାତା ଓ ସାମ୍ବାଦିକ ଅଧିସ୍ୱୀକୃତି କମିଟିର ପ୍ରତିଷ୍ଠାତା ସଭ୍ୟ ଭାବରେ ତାଙ୍କର କୃତିତ୍ୱ ସ୍ପଷ୍ଟ ।

ଜଣେ ସାମ୍ବାଦିକର ଭୂମିକା ଓ ଗୁରୁଦାୟିତ୍ୱ ସମ୍ପର୍କରେ ଖୁବ୍ କମ୍ ଲୋକ ବୁଝିପାରନ୍ତି । ତାଙ୍କର ମୂଲ୍ୟବୋଧକୁ ପରଖି ଯେଉଁମାନେ ତାଙ୍କୁ ସମ୍ମାନିତ କରିଛନ୍ତି ସେମାନେ ହେଲେ ଉତ୍କଳ ସାମ୍ବାଦିକ ସଂଘ (୧୯୭୭), କଟକ ଜିଲ୍ଲା ସାମ୍ବାଦିକ ସଂଘ (୧୯୮୦), ମଧୁସ୍ମୃତି (୧୯୮୨) କୁରୁକ୍ଷେତ୍ର (୧୯୮୨), ଅନୁସନ୍ଧାନ (୧୯୯୩) ଆଦି କେତେକ ଅନୁଷ୍ଠାନ ।



# ସାହିତ୍ୟ ସମୀକ୍ଷକ ଓ ଗବେଷକ
# ଡକ୍ଟର ଗଙ୍ଗାଧର ବଳ

ଅଧ୍ୟାପକ **ଚନ୍ଦ୍ରମଣି ଭାରତୀ**

**ଶୈଶବ :**

ଏକ କରୁଣ ନିଃସହାୟ ମୂହୂର୍ତ୍ତରୁ ଶ୍ରୀ ବଳଙ୍କର ଜୀବନର ଯାତ୍ରାପଥ ଆରମ୍ଭ । ଅତି ଶୈଶବରୁ ପ୍ରାୟ ଦୁଇମାସ ବେଳରୁ ମା'ଙ୍କୁ ହରାଇଛନ୍ତି ସେ । ମା'ଙ୍କର ସ୍ମୃତି ତ ଦୂରର କଥା, ମା କ'ଣ ପଦାର୍ଥ, ସେ ଜୀବନରେ ଦେଖି ନାହାନ୍ତି ।

୧୦, ଅଗଷ୍ଟ ୧୯୨୭, ଭାଦ୍ରବ ମାସ, ଅନନ୍ତ ଶୁକ୍ଳ ଚତୁର୍ଦ୍ଦଶୀ ଗତେ ପୂର୍ଣ୍ଣିମା ତିଥିରେ ବ୍ରାହ୍ମମୁହୂର୍ତ୍ତରେ ତାଙ୍କର ଜନ୍ମ । ତାଙ୍କର ମାମୁଁଘର ହେଉଛି କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡିଭିଜନର ପୁରୁଣିଆଁ ଗ୍ରାମରେ, ବର୍ତ୍ତମାନର ଭୀମକୁଣ୍ଡ ପ୍ରୋଜେକ୍ଟର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର୍ ଅଫିସ ଘରର ଠିକ୍ ଦକ୍ଷିଣ ପୂର୍ବକୁ । ତାଙ୍କର ମାମୁଁଘରକୁ ଆସିବା ଏବଂ ସେଠି ଶେଷ ପର୍ଯ୍ୟନ୍ତ ରହିଯିବା ଏକ ଆକସ୍ମିକ ଘଟଣା ।

ତାଙ୍କର ପୈତୃକ ଘର ହେଉଛି ଯାଜପୁର ଜିଲ୍ଲାର ସୁକିନ୍ଦା ଥାନାର ଓସ୍ତପାଳ (ଅଶ୍ୱତ୍ଥପାଳ) ଗାଁରେ । ଟମକା ପର୍ବତ ଓସ୍ତପାଳର ଦକ୍ଷିଣ-ପଶ୍ଚିମକୁ ପ୍ରାୟ ଚାରି ମାଇଲ୍ ।

ତାଙ୍କର ଜେଜେବାପାଙ୍କ ନାମ ଜଗବନ୍ଧୁ ସାହୁ, ବାପାଙ୍କ ନାମ ନନ୍ଦକିଶୋର ସାହୁ, ମା ଉଷା ଦେଈ । ତାଙ୍କର ବାପା ଥିଲେ ଏକାନ୍ତ

ଧର୍ମପ୍ରାଣା, ସରଳ ଓ କର୍ମଠ । ପ୍ରସ୍ତପାଳରେ ତାଙ୍କ ଘର ଥିଲା ଏକ ବୃନ୍ଦାବ୍ରାଦ ଘର; ପଚାଶି ଏକରରୁ ଅଧିକ ଭୂସମ୍ପତ୍ତି, ଗୋରୁଗାଈ ଗୁହାଳରେ ଭର୍ତ୍ତି । କାଳକ୍ରମେ ଘରର ଅବସ୍ଥା ପଡ଼ିଯାଏ । ଡକ୍ଟର ବଳଙ୍କର ଜନ୍ମ ସମୟକୁ ତାଙ୍କର ମା'ଙ୍କର ଦେହର ଅବସ୍ଥା ଶୋଚନୀୟ । ସେ ଅଞ୍ଚଳରେ ସେତେବେଳେ ଚିକିତ୍ସାର ବ୍ୟବସ୍ଥା ନଥିବାରୁ ଅଜା ଓ ଆନ୍ତି (ମାମା) ତାଙ୍କର ମା ଓ ତାଙ୍କୁ ପୁରୁଣିଆଁ ନେଇଗଲେ । ଡଃ ବଳଙ୍କ ଭାଷାରେ—"ସକାଳରେ ବସିବା ପୂର୍ବରୁ ମା ଅଶ୍ରୁଳ ନେତ୍ରରେ ବାପାଙ୍କ ପାଦରେ ପ୍ରଣାମ କରି କୁଆଡ଼େ କହିଥିଲେ—ବଞ୍ଚିଲେ ଦେଖା ହେବା ।"

ମା'ଙ୍କ କଥା ସତ ହେଲା । ଜନ୍ମ ବେଳୁଁ ଗଙ୍ଗାଧର ମା'ଙ୍କୁ ହରାଇଲେ ମଧ୍ୟ ମା'ଛେଉଣ୍ଡ ଶିଶୁଟିକୁ ଦେଖି ଶତଶତ ଜନନୀଙ୍କର ମାତୃତ୍ୱ ମୁଣ୍ଡଟେକି ଉଠିଛି, ଜାତିବର୍ଣ୍ଣ ନିର୍ବିଶେଷରେ ବହୁ ଜନନୀଙ୍କର ବକ୍ଷର ରସରେ ତାଙ୍କର ପିଣ୍ଡ ପରିପୁଷ୍ଟ ହୋଇଛି । ଜଗନ୍ମନନୀ ଶତଶତ ଜନନୀ ରୂପରେ ଏ ଅବୋଧ ଶିଶୁଟିର ଦାୟିତ୍ୱ ବହନ କରିଛନ୍ତି ।

ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ପ୍ରତି ଡକ୍ଟର ବଳଙ୍କର ଶ୍ରଦ୍ଧା ଏକପ୍ରକାର ସହଜାତ । ଏ ପରିଣତ ବୟସରେ ଶୃଙ୍ଖଳିତ ଜୀବନଯାପନ, ପ୍ରତ୍ୟୁଷ ଉତ୍ଥାନ, ଅଧ୍ୟାତ୍ମଚର୍ଚ୍ଚା ଓ ଅଧ୍ୟୟନ ମଧ୍ୟ ଅପ୍ରତିହତ ଭାବରେ ଚାଲିଛି । ଏ ସବୁ ମୂଳରେ ତାଙ୍କର ଅଜାଙ୍କର (ଦୁର୍ଯୋଧନ ବଳ) ଭୂମିକା ଓ ତାଙ୍କର ପ୍ରେରଣା ଅବିସ୍ମରଣୀୟ । ଅଜା ତାଙ୍କର ବ୍ରାହ୍ମ-ମୁହୂର୍ତ୍ତରୁ ଦେବଦେବୀଙ୍କ ସମ୍ପର୍କରେ ସଂସ୍କୃତ ଶ୍ଳୋକ ଆବୃତ୍ତିସହ ଜଣାଣ ଓ ଭଜନ ଗାଉଥିଲେ । ତାହା ଡଃ ବଳଙ୍କ ମନରେ ସଂସ୍କୃତ ସାହିତ୍ୟ ପ୍ରତି ଯେଉଁ ଶ୍ରଦ୍ଧା ସଞ୍ଚାର କରିଥିଲା, ତା'ର ବିକଚ ବିକାଶ ଘଟିଛି ତାଙ୍କର ଛାତ୍ର ଓ ଅଧ୍ୟାପକ ଜୀବନରେ । ବିଭିନ୍ନ ସଭାସମିତିରେ ସେ ତାଙ୍କ ଅଜାଙ୍କର ଋଣ ସ୍ୱୀକାର କରି ଉଚ୍ଛ୍ୱସିତ ଭାବରେ ତାଙ୍କ ଗୁଣଗାନ କରନ୍ତି ।

ଅଜାଙ୍କର ବ୍ୟକ୍ତିତ୍ୱର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଲା—ତାଙ୍କର ଚମତ୍କାର ହାସ୍ୟ-ବୋଧ (Sense of humour) । ଡକ୍ଟର ବଳ କହନ୍ତି, ସେ ସ୍ଥାନ, କାଳ, ପାତ୍ର ବିଶେଷରେ ବେଳେ ବେଳେ ପଦେ ପଦେ

ଏପରି ମଜା କଥା କହନ୍ତି, ପାଖରେ ଥିବା ଲୋକେ ନ ହସି ରହିପାରନ୍ତି ନାହିଁ ।

ତାଙ୍କର ଆଈ (ମାମା ଲାବଣ୍ୟ ଦେଈ) ଥିଲେ ସ୍ନେହ, କରୁଣା, କୋମଳତା ଓ ସହିଷ୍ଣୁତାର ମୂର୍ତ୍ତିମନ୍ତ ବିଗ୍ରହ । ରାଗନାହିଁ, ଛଳ ନାହିଁ, ତୁଣ୍ଡରେ ପରୁଷବଚନ ନାହିଁ, କଳିକଜିଆ ଠାରୁ ଥାନ୍ତି ଦୂରରେ । ଚାଲି, କଥାବାର୍ତ୍ତା ଯେପରି ଧୀର, ସେମିତି ଶାନ୍ତ । ମା' ଚେଳଣ୍ଡ ନାତିଟି ପ୍ରତି ତାଙ୍କର ସ୍ନେହ ଥିଲା ଅସୀମ ।

## ଗାଁର ପରିବେଶ ଓ ବାଲ୍ୟ ଶିକ୍ଷା :

ଉକ୍ତର ବଳଙ୍କର ଗ୍ରାମଟି କ୍ଷୁଦ୍ର ହେଲେ ମଧ୍ୟ ଅପେକ୍ଷାକୃତ ଶିକ୍ଷିତ ଲୋକଙ୍କର ବସବାସ ହେତୁ ଆଖପାଖ ଗାଁଗୁଡ଼ିକ ମଧ୍ୟରେ ଏହାର ପ୍ରସିଦ୍ଧି ଥିଲା । ଭାଗବତ ଗାଦି, ରାଧାକୃଷ୍ଣ (କୋଠ ଠାକୁର) ଓ ଗଣେଶ ଠାକୁରଙ୍କ ପୂଜା ସହ ବିଭିନ୍ନ ସମୟରେ ବିଭିନ୍ନ ଉତ୍ସବ, ସଂକୀର୍ତ୍ତନ, ଅଷ୍ଟପ୍ରହରୀ, ହରିହାଟ ଅନୁଷ୍ଠିତ ହେଉଥିଲା । ପ୍ରତ୍ୟେକ ଗାଦି ଓ ସର୍ବ-ସାଧାରଣଙ୍କ ସମକ୍ଷରେ ଭାଗବତ, ମହାଭାରତ ଓ ରାମାୟଣ ଆଦି ନିୟମିତ ପଠିତ ହେଉଥିଲା । ଗ୍ରାମରେ ନୈତିକ ଓ ଆଧ୍ୟାତ୍ମିକ ବାତା-ବରଣ ଥିବାରୁ ଲୋକମାନଙ୍କର ଗୁରୁ ଲବ୍ଧ ଜ୍ଞାନ, ଶିଷ୍ଟାଚାର ଓ ଶୃଙ୍ଖଳା-ବୋଧ ଶିଶୁମାନଙ୍କର ଶିକ୍ଷା ଦିଗରେ ସହାୟକ ହୋଇଥିଲା । ଗାଁର ସଂକୀର୍ତ୍ତନ ଓ ଯାତ୍ରାଦଳ ଏବଂ ଗ୍ରାମବାସୀଙ୍କର ପାଲା ଶ୍ରବଣ ଗାଁର ସାଂସ୍କୃତିକ ଭିତ୍ତି ଦୃଢ଼ କରିଥିଲା ।

ଗ୍ରାମ ବିଦ୍ୟାଳୟରୁ ଗଙ୍ଗାଧର ନିମ୍ନ ପ୍ରାଥମିକ ବୃତ୍ତିପରୀକ୍ଷାରେ ପ୍ରଥମସ୍ଥାନ ଅଧିକାର କରି ସ୍ଥାନୀୟ ଆନନ୍ଦପୁର ମଧ୍ୟଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲେ । ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ଦୟାନିଧି ପଣ୍ଡା । ସେ ଯେପରି ଶୃଙ୍ଖଳା ପ୍ରିୟ, ସେହିପରି କ୍ଷମା ଓ ସ୍ନେହ-ପ୍ରବଣ ଥିଲେ । ପ୍ରାୟ ସମସ୍ତ ବିଷୟରେ ସେ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରୁଥିବାରୁ ଶିକ୍ଷକ, ତାଙ୍କର ଅଜା, ଆଈ, ମାମୁଁ (ଦାଦା), ଗ୍ରାମବାସୀ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ସେ ଜଣେ ସ୍କାଉଟ୍ ଭାବରେ ବୈତରଣୀ ବନ୍ୟା ସମୟରେ ବନ୍ୟାପ୍ଲାବିତ ଅଞ୍ଚଳରେ ସେବା-କାର୍ଯ୍ୟର ପ୍ରାଥମିକ ଅଭିଜ୍ଞତା ଅର୍ଜନ କରିଥିଲେ । ନିଜର ଶୃଙ୍ଖଳାବୋଧ,

କଠୋର ପରିଶ୍ରମ, ଶିକ୍ଷକ ଓ ଗୁରୁଜନଙ୍କ ପ୍ରତି ସମ୍ମାନବୋଧ ଓ ବିନୟ ହେତୁ ସେ ଆଦର୍ଶ ଛାତ୍ର ଭାବରେ ଶିକ୍ଷକ ଓ ସହପାଠୀଙ୍କ ଦ୍ୱାରା ଆଦୃତ ହେଉଥିଲେ ।

ସେ କୃତିତ୍ୱର ସହ ମଧ୍ୟଇଂରାଜୀ ପାଶ୍ କରି କେନ୍ଦୁଝର ଗଡ଼ରେ ପ୍ରତିଷ୍ଠିତ ଗିବ୍‌ସନ୍ ହାଇସ୍କୁଲରେ (ବର୍ତ୍ତମାନ ଡ଼. ଏନ. ହାଇସ୍କୁଲ) ମ୍ୟାଟ୍ରିକ ଶ୍ରେଣୀରେ ଅଧ୍ୟୟନ କଲେ । ସେତେବେଳେ ହେଡ଼ମାଷ୍ଟର ଶ୍ରୀଯୁକ୍ତ ଭବଗ୍ରାହୀ ମହାନ୍ତିଙ୍କ ସହ ବହୁ କୃତି ଶିକ୍ଷକ ସ୍କୁଲରେ ଅଧ୍ୟାପନା କରୁଥିଲେ । ଡଃ ବଳ ସର୍ବଦା ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରିବା ସଙ୍ଗେ ସଙ୍ଗେ ନିଜର ଶୃଙ୍ଖଳିତ ଭଦ୍ର ଆଚରଣ ଓ ବିନୟ ଦ୍ୱାରା ଶିକ୍ଷକ, ଛାତ୍ର ଓ ସ୍ଥାନୀୟ ଭଦ୍ର ବ୍ୟକ୍ତିଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲେ । ତାଙ୍କର ଶିକ୍ଷା ଓ ଆଚରଣରେ ସନ୍ତୁଷ୍ଟ ହୋଇ ତାଙ୍କୁ ବିଭିନ୍ନ ବିଷୟରେ ଇଂରାଜୀରେ **Teacher's Hand Book** ପଢ଼ିବାକୁ ଦିଆଯାଉଥିଲା, ଏପରିକି କୌଣସି ଶିକ୍ଷକଙ୍କର ଅନୁପସ୍ଥିତିରେ ତଳ ଶ୍ରେଣୀରେ ଅଧ୍ୟାପନା ନିମିତ୍ତ ହେଡ଼ମାଷ୍ଟର ତାଙ୍କୁ ପଠାଉଥିଲେ । ତାଙ୍କର ସୁପାରିଶକ୍ରମେ ରାଜ୍ୟ ସରକାର ଗଙ୍ଗାଧରଙ୍କୁ ଦୁଇବର୍ଷ ପାଇଁ ମାସିକ ବୃତ୍ତି ବ୍ୟବସ୍ଥା କରିଥିଲେ ଏବଂ ସ୍କୁଲର ଦରମା ଛାଡ଼ କରି ଦେଇଥିଲେ ।

ଏହି ସମୟରେ ଦ୍ୱିତୀୟ ପୃଥିବୀ ମହାସମର ଚାଲିଥିବାରୁ ସ୍କୁଲ ଛାତ୍ରମାନଙ୍କୁ ଯୁଦ୍ଧ ସମ୍ପର୍କୀୟ ସମ୍ବାଦ ଜଣାଇ ଦିଆଯାଉଥିଲା ଏବଂ ଶ୍ରେଣୀ କକ୍ଷରେ ଯୁଦ୍ଧ ସମ୍ପର୍କୀୟ ପୋଷ୍ଟରମାନ ମରାଯାଉଥିଲା । ବୋମା ପଡ଼ିଲେ କପରି ଟ୍ରେଞ୍ଚରେ ଆତ୍ମରକ୍ଷା କରିବାକୁ ହେବ, ଶିକ୍ଷକ ନାରାୟଣ ଚନ୍ଦ୍ର ସାଇରନ୍ ଧ୍ୱନି ଶୁଣାଇ ଛାତ୍ରମାନଙ୍କୁ ତାଲିମ ଦେଉଥିଲେ । କେନ୍ଦୁଝର ଏକ ଗଡ଼ଜାତ ରାଜ୍ୟ ଭାବରେ ବ୍ରିଟିଶ ଶାସନାଧୀନ ଥିବାରୁ ଷ୍ଟେଟ ମଧ୍ୟରେ ସାଧାରଣ ସଭା ସମିତି କରିବାକୁ ଅନୁମତି ଦିଆଯାଉ ନଥିଲା । ଏପରିକି ମହାତ୍ମାଗାନ୍ଧିଙ୍କ ସେକ୍ରେଟେରୀ ମହାଦେବ ଦେଶାଇଙ୍କ ପରଲୋକରେ ସ୍କୁଲରେ ଶୋକ ସଭାଟିଏ କରିବାପାଇଁ ମଧ୍ୟ ଅନୁମତି ମିଳିନଥିଲା । ଏହାସତ୍ତ୍ୱେ ରାଜା ବଳଭଦ୍ର ନାରାୟଣ ଭଞ୍ଜ ଏବଂ ତାଙ୍କର ସାନଭାଇ ଷ୍ଟେଟରୀୟ ସାହେବ ଲକ୍ଷ୍ମୀନାରାୟଣ ଭଞ୍ଜ ଛାତ୍ରମାନଙ୍କର ଶିକ୍ଷୋନ୍ନତି ପ୍ରତି ଧ୍ୟାନ ଦେବା ସଙ୍ଗେ ସଙ୍ଗେ ମ୍ୟାଟ୍ରିକ୍ ପରୀକ୍ଷା ସମୟରେ ପରୀକ୍ଷାକେନ୍ଦ୍ରକୁ

ଆସି ପରୀକ୍ଷାର୍ଥୀଙ୍କୁ ଉତ୍ସାହିତ କରିବା ସହିତ ଉତ୍ତମ ଛାତ୍ରଙ୍କର ସନ୍ଧାନ ନେଉଥିଲେ । ରେସିଡ଼େଣ୍ଟ ଓ ଡି.ପି.ଆଇ. ସ୍କୁଲ ପରିଦର୍ଶନ କରିବା ପାଇଁ ଆସି ଶ୍ରେଣୀରେ ପାଠ ପରୀକ୍ଷା କରୁଥିଲେ ।

ସ୍କୁଲରେ ନିୟମିତ ଭାବରେ ପୁରସ୍କାର ବିତରଣୀ ଉତ୍ସବ ଅନୁଷ୍ଠିତ ହେଉଥିଲା । ଡଃ ବଳ ଜଣେ ଉତ୍ତମ ଆଦର୍ଶ ଛାତ୍ର ଭାବରେ ବହୁ ପୁରସ୍କାର ପାଉଥିଲେ । ଏହି ସମୟରେ ଚନ୍ଦ୍ରଶେଖର ମହାପାତ୍ରଙ୍କର ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନୀ ଓ 'ଛାତ୍ର ସହଚର' ପୁସ୍ତକ ଅଧ୍ୟୟନ କରି ନୈତିକ ଓ ଆଧ୍ୟାତ୍ମିକ ଜୀବନ ପ୍ରତି ବିଶେଷ ଆକୃଷ୍ଟ ହୋଇ ପଡ଼ିଥିଲେ । ଏପରିକି ରାତି ସାଢ଼େ ତିନଟାଠାରୁ ନିତ୍ୟକର୍ମ ସାରି କେନ୍ଦୁଝର ଗଡ଼ର ନିର୍ଜନ ରାସ୍ତାରେ ପ୍ରତ୍ୟୁଷ ଭ୍ରମଣ କରି ପ୍ରଭାତରୁ ନିଜର ଅଧ୍ୟୟନରେ ଲାଗି ଯାଉଥିଲେ । ପ୍ରତ୍ୟହ ଆଧ୍ୟାତ୍ମିକ ଚିନ୍ତନ ହେତୁ ତାଙ୍କ ମନରୁ ଅଭିମାନ ଓ ଅନ୍ୟ ପ୍ରତି ବୈରିଭାବ ପ୍ରାୟ ଦୂରୀଭୂତ ହୋଇ ଯାଇଥିଲା ।

## କଲେଜ ଶିକ୍ଷା :

୧୯୪୫, ଜୁଲାଇରେ ଜିନ୍ଦର ବଳ ରେଭେନ୍ସାକଲେଜରେ ପ୍ରଥମେ ଆଇ. ଏସ୍.ସି.ରେ ନାମ ଲେଖାଇ ପଶ୍ଚିମ ଛାତ୍ରବାସର ଅନ୍ତେବାସୀ ହୁଅନ୍ତି । ସେତେବେଳେ କଲେଜ ଅଧ୍ୟକ୍ଷ ଥା'ନ୍ତି ଶ୍ରୀ ସଚ୍ଚି ରାୟ ଏବଂ ହଷ୍ଟେଲ ତତ୍ତ୍ୱାବଧାରକ ଥା'ନ୍ତି ଜଗଦାନନ୍ଦ ମହାନ୍ତି ।

କଲେଜରେ ସାଧାରଣ ସଭା, ତର୍କ ପ୍ରତିଯୋଗିତା, କୃତ୍ରିମ ଲୋକସଭା ବା ବିଧାନସଭା (Mock Parliament or Mock Assembly) ମାନଙ୍କରେ ସେମାନଙ୍କର ଜ୍ଞାନଗର୍ଭକ ଯୁକ୍ତିନିଷ୍ଠ ଅନର୍ଗଳ ତର୍କ ଓ ବାଗ୍ମିତାରେ ଛାତ୍ରମାନେ ବିସ୍ମିତ ହେବା ସଙ୍ଗେ ସଙ୍ଗେ କମ୍ ଆନନ୍ଦ ଲାଭ କରୁନଥିଲେ ।

ଆଇ:ଏ: ପାଶ୍ କରି ସେ ବି ଏ. ପଢ଼ିଲେ, ଓଡ଼ିଆ ବିଷୟ ପ୍ରତି ଶ୍ରଦ୍ଧା ଥିଲେ ମଧ୍ୟ ଅନର୍ସ ପଢ଼ିବାକୁ ଅନୁମତି ନ ମିଳିବାରୁ ସେ ଅର୍ଥନୀତିରେ ଅନର୍ସ ନେଲେ ଏବଂ ଓଡ଼ିଆ ପାଶ୍ ନେଲେ । ବି.ଏ. ପରେ ରେଭେନ୍ସାରେ ଓଡ଼ିଆରେ ଏମ୍.ଏ. ଏବଂ ଏଲ୍ ଏଲ୍:ବି: ପଢ଼ିଲେ ।

ବସ୍ତୁତଃ ଗୋଟିଏ ବର୍ଷରେ ଏମ୍‌.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ସେ ୧୯୫୧ ରେ ଦ୍ୱିତୀୟ ଶ୍ରେଣୀ ପାଇଲେ । ଓଡ଼ିଆରେ ସେ ବର୍ଷ ଯେଉଁ-ଦ୍ୱିତୀୟ ଶ୍ରେଣୀ ଲାଭ କରି ପାସ୍ କରିଥିଲେ, ସେମାନେ ହେଲେ ଶ୍ରୀନିବାସ ମିଶ୍ର ଧାନବନ୍ଧୁ ରଥ, ପଠାଣି ପଟ୍ଟନାୟକ, ନୀଳମଣି ସାହୁ ଓ ଚନ୍ଦ୍ରଧର ସାମଲ ।

ଆଇ. ଏ ଅଧ୍ୟୟନ କାଳରେ ମହାତ୍ମା ଗାନ୍ଧି କଟକ ଷ୍ଟେସନ ଦେଇ ବ୍ରହ୍ମପୁର ଯାତ୍ରା କରିଥିଲେ । ସାର୍ ସର୍ବପଲ୍ଲୀ ରାଧାକୃଷ୍ଣନ୍, ରାହୁଲ ସାଂକୃତାୟନ ଓ ବହୁ ବିଦେଶୀ ଅଧ୍ୟାପକ ଓ ପଣ୍ଡିତଙ୍କର ଭାଷଣ ଶୁଣିବାର ସୁଯୋଗ ତାଙ୍କୁ ମିଳିଥିଲା । ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଏବଂ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କର ଭାଷଣ ଛାତ୍ର ଓ ଜନସାଧାରଣଙ୍କ ମଧ୍ୟରେ ଆନନ୍ଦ ଓ ଉଦ୍ଦୀପନା ସୃଷ୍ଟି କରିଥିଲା ।

ସ୍ୱାଧୀନତା ଲାଭ ପୂର୍ବରୁ ୧୯୪୬ରେ କଲେଜ୍‌ରେ ବ୍ରିଟିଶ୍ ୟୁନିୟନ ଜାକ୍ ପତାକାକୁ କେନ୍ଦ୍ର କରି ଛାତ୍ର ଆନ୍ଦୋଳନ ଦେଖା ଦେଇଥିଲା ଏବଂ ଜାନକୀବଲ୍ଲଭ ପଟ୍ଟନାୟକ ଥିଲେ ଛାତ୍ରନେତା । ଛାତ୍ର ଧର୍ମଘଟର କେନ୍ଦ୍ରସ୍ଥଳ ଥିଲା ପଶ୍ଚିମ ଛାତ୍ରାବାସ । ଡଃ ବଳଙ୍କର ବି.ଏ. ଅଧ୍ୟୟନ କାଳରେ ଅଗଷ୍ଟ ୧୫, ୧୯୪୭ରେ ଭାରତର ସ୍ୱାଧୀନତା ଘୋଷିତ ହେଲା । ଜାନୁୟାରୀ ୩୦, ୧୯୪୮ରେ ମହାତ୍ମାଗାନ୍ଧିଙ୍କର ମହାପ୍ରୟାଣରେ ସମଗ୍ର ଦେଶ ଶୋକାଚ୍ଛନ୍ନ ହୋଇ ପଡ଼ିଥିଲା ।

ଆଇ.ଏ. ଶ୍ରେଣୀରେ ଅଧ୍ୟୟନ ସମୟରେ ଡଃ ବଳ ଆଧ୍ୟାତ୍ମିକ ଗୀତ ରଚନା କରିବା ସଙ୍ଗେ ସଙ୍ଗେ ସ୍ୱାମୀ ଶିବାନନ୍ଦ, ନିଗମାନନ୍ଦ, ବିବେକାନନ୍ଦଙ୍କ ଜୀବନୀ ଓ ରଚନାବଳୀ ଅଧ୍ୟୟନ କରନ୍ତି । ଋଷିକେଶର ସନ୍ଥ ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କ ସହ ତାଙ୍କର ଯୋଗାଯୋଗ ରହିଥିଲା । ସ୍ୱାମୀଜୀଙ୍କ ଆଦର୍ଶ ଓ ବାଣୀରେ ଅନୁପ୍ରାଣିତ ହୋଇ ସେ ଆମିଷ ତ୍ୟାଗ କରିବା ସଙ୍ଗେ ସଙ୍ଗେ ପ୍ରାଣାୟାମ ଓ ଯୋଗାସନ କରୁଥିଲେ ।

ସଙ୍ଗୀତ ପ୍ରତି ଶ୍ରଦ୍ଧା ଥିବାରୁ ସେ ନିଜ ଚେଷ୍ଟାରେ ହାରମୋନିୟମ ଶିକ୍ଷା କରି ଛାନ୍ଦ, ଚମ୍ପୂ, ଗୀତ ଓ ଓଡ଼ିଶୀ ଗାଉଥିଲେ । ଗାଁରେ ପୌରାଣିକ

ନାଟ୍ୟାଭିନୟ ସହ ଏକ ପାଠାଗାର (ପ୍ରଣବ ପାଠାଗାର) ପ୍ରତିଷ୍ଠା କରି ଲୋକଶିକ୍ଷା ନିମିତ୍ତ ବକ୍ତୃତାମାନ ଦେଇ ରୋଗୀ ସେବା କାର୍ଯ୍ୟ କରୁଥିଲେ ।

ଏମ୍.ଏ. ପଢ଼ିବା ସମୟରେ ରବିବାର ପ୍ରଜାତନ୍ତ୍ର ଓ ଝଙ୍କାର ପତ୍ରିକାରେ ତାଙ୍କର ପ୍ରବନ୍ଧ ଓ ଅନୁବାଦ ପ୍ରକାଶ ପାଉଥିଲା । ସେ ସ୍ୱାମୀ ଶିବାନନ୍ଦଙ୍କର 'Lives of Saints' ପୁସ୍ତକ ଗ୍ରନ୍ଥାରେ 'ଅମୃତପୁତ୍ର' ଶୀର୍ଷକ ପୁସ୍ତକଟିଏ ରଚନା କରିଥିଲେ । ଏଇ ପ୍ରଥମ ପୁସ୍ତକଟି ୧୯୬୦ରେ ନଉ ଷ୍ଟୁଡେଣ୍ଟ୍ସ ଷ୍ଟୋର ଦ୍ୱାରା ପ୍ରକାଶିତ ହୋଇଥିଲା ।

୧୯୪୮ ଜୁଲାଇରେ ଡଃ ବଳଙ୍କର ଯାଜପୁର ରୋଡ଼ ନିକଟସ୍ଥ ଖରସ୍ରୋତା ତୀରବର୍ତ୍ତୀ ଶ୍ରୀମନ୍ତପୁର ଗ୍ରାମର ଦୁର୍ଯ୍ୟୋଧନ ସ୍ୱାଇଁଙ୍କର ଜ୍ୟେଷ୍ଠାକନ୍ୟା ହେମଲତାଙ୍କ ସହ ଶୁଭ ପରିଣୟ ହୋଇଥିଲା ।

## କର୍ମମୟ ଜୀବନ :

୧୯୫୧ରେ ଗଙ୍ଗାଧର ଦ୍ୱିତୀୟ ଶ୍ରେଣୀରେ ଓଡ଼ିଆରେ ଏମ୍. ଏ. ପାଶ୍ କରି ୨୧-୧ ୫୨ରେ ଭଦ୍ରକ କଲେଜର ଅଧ୍ୟାପକ ଭାବରେ ଯୋଗ-ଦାନ କରନ୍ତି । ୧୯୫୨ରେ ଓଡ଼ିଶା ପ୍ରଶାସନିକ ସେବା (O.A S) ପାଇଁ ନିର୍ବାଚିତ ହୁଅନ୍ତି ।

ସେତେବେଳେ ଭଦ୍ରକ କଲେଜ ଘରୋଇ କଲେଜ୍ ହେଲେ ମଧ୍ୟ ଉନ୍ନତ ମାନର ଶିକ୍ଷା ପ୍ରଦାନ ହେତୁ ତାହା ଓଡ଼ିଶାରେ ସୁପରିଚିତ ହୋଇଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଛାତ୍ରମାନେ ଆସି ଅଧ୍ୟୟନ କରୁଥା'ନ୍ତି । ୧୯୫୯ରେ ଓଡ଼ିଶା ଶିକ୍ଷା ସେବା ପାଇଁ (Orissa Educational Service) ନିର୍ବାଚନରେ ପ୍ରଥମ ସ୍ଥାନ ଅଧିକାର କରି ୧୩ । ୭ । ୫୯ରେ ରେଭେନ୍ସା କଲେଜରେ ଯୋଗଦାନ କରନ୍ତି; ସେତେବେଳେ ଓଡ଼ିଆ ବିଭାଗରେ ପ୍ରଫେସର ଓ ମୁଖ୍ୟ ଅଧ୍ୟାପକ ଥାଆନ୍ତି ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସୁପରିଚିତ ଲେଖକ ଅଧ୍ୟାପକ ଡଃ ନଟବର ସାମନ୍ତରାୟ, ଡଃ କୁଞ୍ଜବିହାରୀ ଦାଶ, ଡଃ କାହ୍ନୁଚରଣ ମିଶ୍ର, ଡଃ ଗୋପାଳଚନ୍ଦ୍ର ମିଶ୍ର, ଡଃ ଜାନକୀବଲ୍ଲଭ ମହାନ୍ତି ପ୍ରଭୃତି ସେତେବେଳେ ରେଭେନ୍ସାରେ ଥା'ନ୍ତି ।

୧୯୫୯ରୁ ୧୯୬୩ ପର୍ଯ୍ୟନ୍ତ କଟକ ରହଣି କାଳରେ ଡ଼ଃ ବଳ ଅଭିମନ୍ୟୁ ସାମନ୍ତସିଂହାରଙ୍କ ସମ୍ପର୍କରେ ଗବେଷଣା କରିବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ରେଜିଷ୍ଟ୍ରେସନ୍ କରନ୍ତି ।

୧୯୬୩ରୁ ୧୯୬୯ ପର୍ଯ୍ୟନ୍ତ ସେ ବାଲେଶ୍ୱର ଫକୀରମୋହନ କଲେଜରେ ଅବସ୍ଥାପିତ ହୋଇ ବ୍ୟାସକବି ଫକୀରମୋହନଙ୍କର ଶାନ୍ତି କାନନରେ ଅବସ୍ଥାପନ କରନ୍ତି । ବାଲେଶ୍ୱର ରହଣି କାଳରେ ସେ ଫକୀରମୋହନ ସାହିତ୍ୟ ପରିଷଦର ଉପସଭାପତି ଓ ସଭାପତି ହେବା ସଙ୍ଗେ ସଙ୍ଗେ ବାଲେଶ୍ୱର, ମୟୂରଭଞ୍ଜ, ମେଦିନୀପୁର, କଟକ ଓ କେନ୍ଦୁଝର ଜିଲାର ବିଭିନ୍ନ ସାଂସ୍କୃତିକ ଉତ୍ସବ ଏବଂ କଲେଜମାନଙ୍କରେ ସାହିତ୍ୟ, ସଂସ୍କୃତି ଓ ଆଧ୍ୟାତ୍ମିକତା ଉପରେ ଭାଷଣ ପ୍ରଦାନ କରନ୍ତି । ବାଲେଶ୍ୱରର ବିଭିନ୍ନ ସ୍ୱାଧୀନତା ସଂଗ୍ରାମୀ ଓ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସିବା ସଙ୍ଗେ ସଙ୍ଗେ ଗାନ୍ଧି ଶାନ୍ତି ପ୍ରତିଷ୍ଠାନ ସହ ସଂପୃକ୍ତ ହୋଇ ସର୍ବୋଦୟ ସାହିତ୍ୟର ତାତ୍ତ୍ୱିକ ଅନୁଶୀଳନ କରନ୍ତି ।

ନଭେମ୍ବର ୧୯୬୯ରେ ତାଙ୍କର ଢେଙ୍କାନାଳ କଲେଜକୁ ବଦଳି ହୁଏ ଏବଂ ଜାନୁୟାରୀ ୧୯୭୦ରେ ଓଡ଼ିଶା ଶିକ୍ଷା ସେବାର ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୁଅନ୍ତି ରିଡ଼ର ଭାବରେ । ସେ ମଇ ୧୯୭୦ରେ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଯୋଗଦିଅନ୍ତି । ଦୁର୍ଭାଗ୍ୟକୁ ତାଙ୍କର ପତ୍ନୀ ହେମଲତାଙ୍କର ଆକସ୍ମିକ ବିୟୋଗ ଘଟେ ୩୦-୮-୧୯୭୦ରେ । ଗୋଟିଏ ବର୍ଷର ରହଣି ପରେ ଅଗଷ୍ଟ ୧୯୭୧ରେ ଭଦ୍ରକ କଲେଜରେ ଅବସ୍ଥାପିତ ହୁଅନ୍ତି । ୧୯୭୫ରେ ବାଲେଶ୍ୱର ମହିଳା କଲେଜର ଇତିହାସ ଅଧ୍ୟାପିକା ଡ଼ଃ ଶାନ୍ତି ମହାପାତ୍ରଙ୍କ ସହ ତାଙ୍କର ବିବାହ ହୁଏ । ଭଦ୍ରକରେ ଦୀର୍ଘ ଏଗାରବର୍ଷ ରହଣି କାଳରେ ସେ ଅଧ୍ୟାପନା, ବିଭାଗ ପରିଚାଳନା ସହ ୧୯୮୧ରେ କିଛି ସମୟ ପାଇଁ ଅଧ୍ୟକ୍ଷ ଦାୟିତ୍ୱ ସମ୍ପାଦନ କରନ୍ତି । ସେ କବି ଗୋପାଳକୃଷ୍ଣଙ୍କ ସମ୍ପର୍କରେ ଗବେଷଣା କରି ୧୯୮୧ରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ଡ଼ି.ଲିଟ୍ (Doctor of Literature) ଉପାଧିରେ ଭୂଷିତ ହୁଅନ୍ତି । ତାଙ୍କର ଉକ୍ତ ଡିଲିଟ୍ ଉପାଧି ଫଳରେ ସେ ଅଗଷ୍ଟ, ୧୯୮୨ରେ ପ୍ରଫେସର ପଦକୁ ଉନ୍ନୀତ ହୋଇ ରେଭେନ୍‌ସା

କଲେଜରେ ଓଡ଼ିଆ ବିଭାଗରେ ପ୍ରଫେସର୍ ଓ ମୁଖ୍ୟ ଅଧ୍ୟାପକ ଭାବରେ ଯୋଗଦାନ କରନ୍ତି ।

ଭଦ୍ରକ ରହଣି କାଳରେ ସେ ବହୁ ଅନୁଷ୍ଠାନ ସହ ସଂପୃକ୍ତ ହେବା ସହିତ 'ସାହିତ୍ୟ ସଂସ୍କୃତି ପରିଷଦ' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରି ତା'ର ସଭାପତି ରହିଲେ ୧୯୯୨ ପର୍ଯ୍ୟନ୍ତ । ଡଃ ବଳ ଓ ସଙ୍ଗଠନ ସମ୍ପାଦକ ସାମ୍ବାଦିକ ସୁବଳ ଜେନାଙ୍କ ଆନ୍ତରିକ ଉଦ୍ୟମରେ ଭଦ୍ରକ ଓ ଭଦ୍ରକ ବାହାରେ ବିଭିନ୍ନ ସମୟରେ ବହୁ ସଭାସମିତିରେ ଯୋଗଦେଇ ସେ ଅଞ୍ଚଳରେ ଏକ ପ୍ରକାର ସାଂସ୍କୃତିକ ପୁନର୍ଜାଗରଣ ଆଣି ପାରିଥିଲେ । ଡଃ ବଳ କବିଶେଖର ଚିନ୍ତାମଣିଙ୍କ ସ୍ମୃତି ମନ୍ଦିର ନିକଟରେ ବାସଗୃହଟିଏ ନିର୍ମାଣ କରନ୍ତି ।

ରେଭେନ୍ସାରେ ପ୍ରଫେସର୍ ଓ ବିଭାଗୀୟ ମୁଖ୍ୟ ଭାବରେ ଡଃ ବଳ ବିଭାଗର ପରିଚାଳନାଗତ ଶୃଙ୍ଖଳା ପ୍ରତି ଧ୍ୟାନ ଦେବା ସଙ୍ଗେ ସଙ୍ଗେ ଉନ୍ନତ ମାନର ଅଧ୍ୟାପନା ଏବଂ ସାପ୍ତାହିକ ତଥା ସାମୟିକ ଆଲୋଚନା ଚକ୍ର (ସେମିନାର୍) ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରୁଥିଲେ ।

୧୯୮୨ ଫେବୃୟାରୀରେ ସେ ହୃଦ୍‌ରୋଗରେ ପୀଡ଼ିତ ହୋଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ୍‌ର କାର୍ଡିଓଲୋଜି ୱାର୍ଡ଼ର ଇଣ୍ଟେନ୍‌ସିଭ୍ କେୟାର୍ ୟୁନିଟ୍‌ରେ ଏକ ମାସ ଚିକିତ୍ସିତ ହୁଅନ୍ତି । ୧୯୯୩ ଜୁଲାଇରେ ଭେଲୋର ଖ୍ରୀଷ୍ଟିୟାନ୍ ମେଡ଼ିକାଲ କଲେଜ୍ ହସପିଟାଲ୍‌ରେ ତାଙ୍କର ଓପନ୍ ହାର୍ଟ ସର୍ଜରି ହୁଏ ।

୧୯୮୫ ଅଗଷ୍ଟ ୩୧ରେ ସେ ଶିକ୍ଷା-ସେବାରୁ ଅବସର ଗ୍ରହଣ କରି ପ୍ରଥମତଃ ତିନିବର୍ଷ ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ଆର୍ଥିକ ସାହାଯ୍ୟ ମଞ୍ଜୁରି କ୍ରମେ 'ରୂପଗୋସ୍ୱାମୀ ଓ କୃଷ୍ଣଦାସ କବିରାଜ'ଙ୍କ ସମ୍ପର୍କରେ ଏକ ବୃହତ୍ତର ଗବେଷଣା ପରିକଳ୍ପନାର ମୁଖ୍ୟ ଗବେଷକ ହୁଅନ୍ତି ଏବଂ ୧୯୯୩ଠାରୁ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନ୍ ତାଙ୍କର ଆଉ ଏକ ଗବେଷଣା-ପ୍ରକଳ୍ପ ଦୁଇବର୍ଷ ପାଇଁ ମଞ୍ଜୁରି କରନ୍ତି । ଦ୍ୱିତୀୟ ପ୍ରକଳ୍ପଟିର ଶିରୋନାମା ହେଉଛି, 'ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ଓ ସମାଜ ଉପରେ ମହାକବି କାଳିଦାସଙ୍କ ପ୍ରଭାବ ।'

## ଗବେଷଣା ତତ୍ତ୍ୱାବଧାନ :

ଡକ୍ଟର ବଳଙ୍କ ତତ୍ତ୍ୱାବଧାନରେ ବାରଜଣ ଅଧ୍ୟାପକ ଓ ଅଧ୍ୟାପିକା ଗବେଷଣା କରୁଥିଲେ । ସେମାନଙ୍କ ମଧ୍ୟରୁ ପାଞ୍ଚଜଣ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପି.ଏଚ୍‌ଡି. ଡିଗ୍ରୀ ଲାଭକରି ସାରିଛନ୍ତି । ଦୁଇଜଣ ବରିଷ୍ଠ ଅଧ୍ୟାପକ ଡଃ ରତ୍ନାକର ସାହୁ ଓ ଡକ୍ଟର ଖଗେନ୍ଦ୍ର ନାଥ ମଲ୍ଲିକ ତାଙ୍କ ତତ୍ତ୍ୱାବଧାନରେ ଡି.ଲିଟ୍. ପାଇଁ ଗବେଷଣା କରୁଛନ୍ତି ।

## ପ୍ରଶାସନିକ ଓ ପରିଚାଳନାଗତ ଅଭିଜ୍ଞତା :

ଡକ୍ଟର ବଳ ତାଙ୍କର ଦୀର୍ଘକାଳର ଅଧ୍ୟାପନା ଓ ସାହିତ୍ୟ ସାଧନା କାଳରେ ବିଭାଗୀୟ ପରିଚାଳନା ସହିତ ବିଭିନ୍ନ ପ୍ରଶାସନିକ ଦକ୍ଷତା ଅର୍ଜନ କରିଥିଲେ । ଭଦ୍ରକ କଲେଜ ଅବସ୍ଥାନ କାଳରେ ସେ ବିଭାଗ-ପରିଚାଳନା ଓ ଗଭର୍ଣ୍ଣିଂ ବଡ଼ିର ଅଧ୍ୟାପକ-ପ୍ରତିନିଧି ହେବା ସହ କିଛି ସମୟ କଲେଜର ଅଧକ୍ଷ ଦାୟିତ୍ୱ ଗ୍ରହଣ କରି ଛାତ୍ର ଓ କର୍ମଚାରୀଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲେ । ସେ ବିଭିନ୍ନ କଲେଜର ଓଡ଼ିଆ ସାହିତ୍ୟ ସମାଜର ଉପସଭାପତି ଭାବରେ ସାହିତ୍ୟ ସମାଜକୁ ସକ୍ରିୟ କରିବା ସଙ୍ଗେ ସଙ୍ଗେ ଭଦ୍ରକ କଲେଜର ମୁଖପତ୍ର 'ପଲ୍ଲୀଭାରତୀ' ଓ ରେଭେନ୍‌ସା କଲେଜର ମୁଖପତ୍ର 'Revenshavianର ମୁଖ୍ୟ ସମ୍ପାଦକ ଥିଲେ ।

ବିଭିନ୍ନ କଲେଜରେ ବିଭିନ୍ନ ସମୟରେ ସେ ଦିବାଧ୍ୟାୟୀ ଛାତ୍ର-ସଙ୍ଘର ସେନ୍‌ସର, ନାଟ୍ୟ ସଂସଦର ଉପସଭାପତି, ଲାଇବ୍ରେରୀ ଅର୍ଥ ପରାମର୍ଶଦାତା କମିଟିର ଚେୟାରମ୍ୟାନ୍ ଓ ଡିସିପ୍ଲିନ୍ କମିଟିର ସଭ୍ୟ ଥିଲେ ।

ଆଇ. ଏ., ଆଇ. ଏସ୍ ସି.ଠାରୁ ଆରମ୍ଭ କରି ଅନର୍ସ, ଏମ୍. ଏ. ଓ ଏମ୍. ଫିଲ୍. ଶ୍ରେଣୀରେ ଦୀର୍ଘକାଳର ଅଧ୍ୟାପନା ଅଭିଜ୍ଞତା ସହ ସେ ଏମ୍. ଫିଲ୍. ଓ ପି. ଏଚ୍.ଡ଼ି. ଗବେଷକମାନଙ୍କର ତତ୍ତ୍ୱାବଧାରକ ଥିଲେ । ଦୀର୍ଘକାଳ ଧରି ସେ ବିଭିନ୍ନ ବିଶ୍ୱବିଦ୍ୟାଳୟର ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ହୋଇ ଆସୁଛନ୍ତି । ବିଭିନ୍ନ ବିଶ୍ୱବିଦ୍ୟାଳୟ, ସରକାରୀ ଓ ବେସରକାରୀ କଲେଜର ଅଧ୍ୟାପକ, ରିଡ଼ର୍ ଓ ପ୍ରଫେସର ନିର୍ବାଚନ ପାଇଁ ସେ ବିଷୟ-ବିଶେଷଜ୍ଞ (Subject Expert) ଭାବରେ ନିଯୁକ୍ତି ପାଇ ଆସୁଛନ୍ତି ।

## ପୁରସ୍କାର ପାଇଁ ରେଫରି :

ଡକ୍ଟର ବଳ କେନ୍ଦ୍ର ସାହିତ୍ୟ ଏକାଡେମୀ, ଜ୍ଞାନପୀଠ, କବୀର ସମ୍ମାନ ପୁରସ୍କାର, ସାରଳା ପୁରସ୍କାର ଓ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଁ ଦୀର୍ଘକାଳ ଧରି ରେଫରି ଭାବରେ ନିଯୁକ୍ତି ଲାଭକରି ଆସୁଛନ୍ତି ।

## ବିଭିନ୍ନ କମିଟିର ସଦସ୍ୟ :

ଏହାଛଡ଼ା ସେ ୧୯୮୫ ଠାରୁ ୧୯୯୧ ପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟ ଏକାଡେମୀର ଓ ତା'ର ଅର୍ଥ-କମିଟିର ସଭ୍ୟ ଥିବା ସଙ୍ଗେ ସଙ୍ଗେ ଗ୍ରାମ୍ୟ ପାଠାଗାର ପାଇଁ ନିଯୁକ୍ତି କମିଟି, ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗ ଅଧୀନରେ ପାଣ୍ଡୁଲିପି ମୂଲ୍ୟାୟନ ତଥା ଆର୍ଥିକ ସାହାଯ୍ୟ ମଞ୍ଜୁରି ସବ୍‌କମିଟିର ଏବଂ ରାଜା ରାମମୋହନ ରାୟ ଲାଇବ୍ରେରୀ ଫାଉ-ଣ୍ଡେସନ୍ କମିଟିର ସଭ୍ୟ ଥିଲେ (୧୯୮୪-୮୬, ୧୯୮୯-୯୦) ।

## ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ସମ୍ପର୍କ :

ଡକ୍ଟର ବଳ ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ନାନା ଭାବରେ ସମ୍ପୃକ୍ତ । ସେ ୧୯୬୦ରୁ ୧୯୬୩ ପର୍ଯ୍ୟନ୍ତ କଟକସ୍ଥ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ, ବର୍ତ୍ତମାନ ସେ ଆଜୀବନ ସଭ୍ୟ । ୧୯୬୪ରୁ ୧୯୬୭ ପର୍ଯ୍ୟନ୍ତ ବାଲେଶ୍ୱର ଫକୀର ମୋହନ ସାହିତ୍ୟ ପରିଷଦର ଉପସଭାପତି ଏବଂ ୧୯୬୮ରେ ତା'ର ସଭାପତି ଥିଲେ । ସେ ଭଦ୍ରକ ସାହିତ୍ୟ ପରିଷଦର ସଭ୍ୟ ଥିବା ସଙ୍ଗେ ସଙ୍ଗେ (୧୯୭୧-୭୫) ସେ ସେଠାରେ ୧୯୮୦ରେ ସାହିତ୍ୟ ସଂସ୍କୃତି ପରିଷଦ ଗଠନ କରି ୧୯୯୨ ପର୍ଯ୍ୟନ୍ତ ତା'ର ସଭାପତି ଭାବରେ ପାଠଚକ୍ର ଏବଂ ସାହିତ୍ୟ ଓ ସାଂସ୍କୃତିକ ସଭାମାନ ଅନୁଷ୍ଠିତ କରି ଆସିଛନ୍ତି । ଭଦ୍ରକ ଜିଲ୍ଲାର ଉତ୍ତର ବାହ୍ମଣୀ, ରାନ୍ଧିଆ, ତିହିଡ଼ି, ଧାମନଗର ପ୍ରଭୃତିରେ ପରିଷଦର ଶାଖାମାନ ପ୍ରତିଷ୍ଠିତ ହୋଇଛି । ୧୯୭୦ରେ ସେ ବାରିପଦା ସାହିତ୍ୟ ସଂସଦର ଉପସଭାପତି ଏବଂ ୧୯୮୬ ଠାରୁ ଭୁବନେଶ୍ୱର ନାରାୟଣ ବୈରିଶାଳ ସ୍ମୃତି ପରିଷଦର ସଭ୍ୟ ରହିଛନ୍ତି । ତାଙ୍କ ସମ୍ପା-ଦନାରେ ସ୍ମୃତି ପରିଷଦ ପକ୍ଷରୁ ତିନୋଟି ଉପାଦେୟ ପୁସ୍ତକ (ଗ୍ରନ୍ଥବିରହ ଓ ନିତ୍ୟପୂଜା ବିଧାନ, ଶ୍ରୀମଦ୍ ଭାଗବତ : ଏକ ଅଧ୍ୟୟନ ଓ ଆମରି

ଆଧ୍ୟାତ୍ମିକ ଐତିହ୍ୟ) ପ୍ରକାଶିତ ହୋଇଛି । କଟକରେ ନୀଳକଣ୍ଠ ଶତ-ବାର୍ଷିକୀ ଉତ୍ସବର ଆବାହକ ଥାଇ ସେ ପଣ୍ଡିତ ନୀଳକଣ୍ଠଙ୍କ ସମ୍ପର୍କରେ ଆଲୋଚନା ସଭାମାନ ଅନୁଷ୍ଠିତ କରିଛନ୍ତି । ବର୍ତ୍ତମାନ ସେ ଋଷିକେଶର ସ୍ୱାମୀ ଶିବାନନ୍ଦଙ୍କର ଦିବ୍ୟଜୀବନ ସଂଘର (Divine Life Society) ସଭ୍ୟ । ୧୯୯୨ ଠାରୁ କଟକରେ 'ସାହିତ୍ୟ ଓ ଗବେଷଣା ପ୍ରତିଷ୍ଠାନ' (Academy of Letters and Research) ପ୍ରତିଷ୍ଠା କରି ତା'ର ସଭାପତି ଭାବରେ କାର୍ଯ୍ୟ କରୁଛନ୍ତି । ଏହା ଏକ ରେଜିଷ୍ଟାର୍ଡ଼ ଅନୁଷ୍ଠାନ । ଡକ୍ଟର ସୁବୋଧ କୁମାର ମହାନ୍ତି ଏବଂ ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ ଏହାର ଉପ-ସଭାପତି ଏବଂ ଡକ୍ଟର ଖଗେନ୍ଦ୍ର ନାଥ ମଲ୍ଲିକ ଏହାର ସାଧାରଣ ସମ୍ପାଦକ ଅଛନ୍ତି । ପ୍ରତିଷ୍ଠାନ ଆନୁକୂଲ୍ୟରେ ବିଭିନ୍ନ ସମୟରେ ସନ୍ଦର୍ଭ ପାଠ, ଆଲୋଚନା ସଭା ଓ ପୁସ୍ତକ ଉଦ୍‌ଘାଟନ ହୋଇ ଯାଇଛି । ଯୋଜନା ଅନୁସାରେ ବିଭିନ୍ନ ଅଭିଧାନ, ସାହିତ୍ୟ ସମୀକ୍ଷା ଓ ଗବେଷଣା-ମୂଳକ ଗ୍ରନ୍ଥ ପ୍ରସ୍ତୁତ ଏହାର ପ୍ରଧାନ ଅଭିମୁଖ୍ୟ ।

## ପାଣ୍ଡିତ୍ୟ ଓ କୃତିତ୍ୱ :

ଜଣେ ଲବ୍ଧପ୍ରତିଷ୍ଠ ଅଧ୍ୟାପକ, ବକ୍ତା ଓ ସାହିତ୍ୟ ସମାଲୋଚକ ଭାବରେ ଡକ୍ଟର ବଳ ଓଡ଼ିଶାରେ ସୁପରିଚିତ ।

ବିଭିନ୍ନ ଆଧ୍ୟାତ୍ମିକ ଗ୍ରନ୍ଥ, ମହାପୁରୁଷ ଭକ୍ତ ଓ ଦାର୍ଶନିକମାନଙ୍କର ଜୀବନୀ ଓ ରଚନାବଳୀ, ସର୍ବୋଦୟ ସାହିତ୍ୟ ଅଧ୍ୟୟନରେ ତାଙ୍କର ସହଜାତ ଶ୍ରଦ୍ଧା ।

ନିଜର ଜ୍ଞାନ, ଅଧ୍ୟାପନା ଓ ସାହିତ୍ୟ ସାଧନାରେ ତାଙ୍କର ତିଳମାତ୍ର ଅହଂକାର ନାହିଁ । ଭାଗବତର ଅବଧୂତ ଓ ଆମେରିକାର ଦାର୍ଶନିକ ଇମର୍ସନଙ୍କ (Emerson) ପରି ସେ ସବୁଦିନେ ନିଜକୁ ଜଣେ ଛାତ୍ର ମନେକରନ୍ତି । ଜ୍ଞାନାର୍ଜନର ସ୍ପୃହା ପ୍ରବଳ ଥିବାରୁ ସେ ଯେଉଁଠୁ କିଛି ନୂତନ ଭାବ ଚିନ୍ତା ଆହରଣ କରନ୍ତି, ତାହା ଲିପିବଦ୍ଧ କରିବା ସଙ୍ଗେ ସଙ୍ଗେ ତାହା ଉପରେ ମନନ କରନ୍ତି । ଏପର୍ଯ୍ୟନ୍ତ ବିଭିନ୍ନ ଭାଷାରେ ତାଙ୍କର ବିଭିନ୍ନ ପ୍ରକାର ପୁସ୍ତକ ସଂଗ୍ରହ ରହିଛି । ଇଂରାଜୀ, ଓଡ଼ିଆ, ବଙ୍ଗଳା, ହିନ୍ଦୀ ପ୍ରଭୃତି ବିଭିନ୍ନ ଭାଷାର ପତ୍ରିକାର ସେ ନିୟମିତ ପାଠକ । ବିଭିନ୍ନ ଉପାଦେୟ ପୁସ୍ତକର ସେ ଯେଉଁ ପ୍ରଜ୍ଞାନିଷ୍ଠ ନୋଟ୍

କରନ୍ତି, ସେଗୁଡ଼ିକ ଆଗ୍ରହୀ ଗବେଷକ, ଲେଖକ ଓ ଗ୍ରନ୍ଥମାନଙ୍କ ମଧ୍ୟରେ ଅତି ମୂଲ୍ୟବାନ୍ ।

ଡକ୍ଟର ବଳ ଜଣେ ଖ୍ୟାତନାମା ସାହିତ୍ୟ ସମାଲୋଚକ, ପ୍ରାବନ୍ଧିକ, ଗବେଷକ ଏବଂ ଶିଶୁ ଓ କିଶୋର ସାହିତ୍ୟ ସ୍ରଷ୍ଟା । ଛାତ୍ରାବସ୍ଥାରୁ ଏପର୍ଯ୍ୟନ୍ତ ଓଡ଼ିଶା ଓ ଓଡ଼ିଶା ବାହାରର ପ୍ରଖ୍ୟାତ ସାହିତ୍ୟ ପତ୍ରିକାମାନଙ୍କରେ (କୋଣାର୍କ, ଝଙ୍କାର, ସହକାର, ନଗର, ଆସନ୍ତା କାଲି, ସମାବେଶ, ଉତ୍କଳ ସାହିତ୍ୟ, ସମାବେଶ, ସପ୍ତର୍ଷି (ସମ୍ବଲପୁର ବିଶ୍ୱବିଦ୍ୟାଳୟ ମୁଖପତ୍ର), ପାଞ୍ଚଜନ୍ୟ, ଗୋକର୍ଣ୍ଣିକା, ସମାଜ (ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା), କଳିଙ୍ଗ (ପୂଜା ସଂଖ୍ୟା), ଉତ୍କଳ ପ୍ରସଙ୍ଗ ପ୍ରଭୃତି) ଏବଂ ବହୁ ପତ୍ରିକା ଓ ସଂକଳନ ଗ୍ରନ୍ଥମାନଙ୍କରେ ଦୁଇଶତାଧିକ ସାହିତ୍ୟ ସମାଲୋଚନା, ଗବେଷଣା ଓ ସାଧାରଣ ପ୍ରବନ୍ଧ ପ୍ରକାଶିତ । ସେ ଉଭୟ ଓଡ଼ିଆ ଓ ଇଂରାଜୀରେ ଲେଖାଲେଖି କରନ୍ତି ।

ଏପର୍ଯ୍ୟନ୍ତ ତାଙ୍କର ଷୋଳଟି ସାହିତ୍ୟ ସମାଲୋଚନାମୂଳକ ପୁସ୍ତକ; ଶିଶୁ, କିଶୋର ଓ ବୟସ୍କଙ୍କ ପାଇଁ ଛ'ଟି ସାଧାରଣ ପୁସ୍ତକ ଏବଂ ଦୁଇଟି ସମ୍ପାଦିତ ପୁସ୍ତକ ପ୍ରକାଶିତ । ଏହା ବ୍ୟତୀତ ଗୋଟିଏ ପୁସ୍ତକ ପ୍ରକାଶ ଅପେକ୍ଷାରେ ଏବଂ ପାଞ୍ଚଟି ସମୀକ୍ଷାମୂଳକ ପୁସ୍ତକ ପ୍ରସ୍ତୁତିର ଯୋଜନା ରହିଛି । ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ଓଡ଼ିଆ ସାହିତ୍ୟ ଇତିହାସ ପ୍ରଣୟନ ଯୋଜନାରେ 'ପ୍ରାଚୀନଗୀତି ଓ ଚୌପଦୀ ସାହିତ୍ୟ' ଏବଂ **Vaisnavism in Orissa** ପୁସ୍ତକ ପ୍ରଣୟନର ଦାୟିତ୍ୱ ପ୍ରଦାନ କରିଛନ୍ତି ।

## ବିଭିନ୍ନ ସେମିନାର, ରିଫ୍ରେସର କୋର୍ସ ଓ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗଦାନ :

ଡକ୍ଟର ବଳ ଓଡ଼ିଶା ଓ ଓଡ଼ିଶା ବାହାରର ବିଭିନ୍ନ ବିଶ୍ୱବିଦ୍ୟାଳୟ, କଲେଜ ଓ ସାଧାରଣ ଅନୁଷ୍ଠାନମାନଙ୍କରେ ଅନୁଷ୍ଠିତ ସେମିନାର, ରିଫ୍ରେସର୍ କୋର୍ସ ଓ ପ୍ରାଚ୍ୟବିଦ୍ୟା ସମ୍ମିଳନୀରେ ଯୋଗଦାନ କରି ନିଜେ ଗବେଷଣା ମୂଳକ ସନ୍ଦର୍ଭ ଉପସ୍ଥାପନ ଓ ଭାଷଣ ପ୍ରଦାନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଆଲୋଚନାରେ ଭାଗ ନେଇଥିଲେ । ତନ୍ମଧ୍ୟରୁ କେତୋଟିର ଉଲ୍ଲେଖ କରାଯାଉଛି—

୧ । ପ୍ରାଚୀନ ଓଡ଼ିଆ ସାହିତ୍ୟର ଆଧୁନିକ ଓଡ଼ିଆ ସାହିତ୍ୟକୁ ଦାନ, ବିଶ୍ୱଭାରତୀ ଓଡ଼ିଆ ସେମିନାର୍, ବିଦ୍ୟାଭବନ, ୧୧ । ୨ । ୧୯୭୩ ।

୨ । ଉତ୍କଳୀୟ ସଂସ୍କୃତିର ସଂସ୍କୃତ ସାହିତ୍ୟକୁ ଅବଦାନ, ବାଲେଶ୍ୱରଠାରେ ୧୪ । ୧ । ୯୦ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଆୟୋଜିତ ସେମିନାର୍ ।

୩ । Cross Comment between Oriya and Bengali Literature, ଓଡ଼ିଶା ସାହିତ୍ୟ ଏକାଡେମୀ ଆୟୋଜିତ ସାଂସ୍କୃତିକ ଭାବ ବିନିମୟ ଯୋଜନାରେ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ବିଭାଗରେ ପ୍ରଦତ୍ତ ଭାଷଣ (୨୮ । ୩ । ୮୨) ।

୪ । ଓଡ଼ିଶାରେ ସାମାଜିକ ଓ ଧର୍ମୀୟ ସଂସ୍କାର ଆନ୍ଦୋଳନ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗ ପକ୍ଷରୁ ୨୮ । ୬ । ୮୪ରେ ଆୟୋଜିତ ୟୁ. ଜି. ସି. ସେମିନାର୍‌ରେ ଉପସ୍ଥାପିତ ସନ୍ଦର୍ଭ ଓ ଭାଷଣ ।

୫ । ଓଡ଼ିଆ ସାହିତ୍ୟ ଓ ଆଦିବାସୀ ସଂସ୍କୃତି, କୋରାପୁଟରେ ମେ ୧୯୮୧ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆୟୋଜିତ ସେମିନାର୍‌ରେ ଆଲୋଚନା ।

୬ । Orissa Heritage : Her People and Culture, ବିଶ୍ୱଭାରତୀ, ଶାନ୍ତିନିକେତନରେ ବଙ୍ଗଳା ବିଭାଗ ଆୟୋଜିତ ସେମିନାର୍‌ରେ ଉପସ୍ଥାପିତ ସନ୍ଦର୍ଭ ।

୭ । Jagannath Culture and National Entegration ଡିସେମ୍ବର, ୧୯୮୬ରେ ଡିଗ୍ରିଗଡ଼ ଡି. ଏ. ଭି. କଲେଜ ପକ୍ଷରୁ ଆୟୋଜିତ ୟୁ. ଜି. ସି. ସେମିନାର୍‌ରେ ଉପସ୍ଥାପିତ ସନ୍ଦର୍ଭ, ଗୋଟିଏ ଅଧିବେଶନରେ ସଭାପତି ଭାବରେ କାର୍ଯ୍ୟ ପରିଚାଳନା ।

୮ । ସାହିତ୍ୟରେ ରୋମାଣ୍ଟିକ୍ ଚେତନା, ଆଞ୍ଚଳିକ ଓଡ଼ିଆ ସେମିନାର୍, ରେଭେନ୍ସା କଲେଜ, କଟକ, ସେପ୍ଟେମ୍ବର ୧୯୮୨ ।

୯ । ଭଞ୍ଜ କାବ୍ୟ ଓ ନୈଷଧ, ମଇ ୧୯୫୫ରେ କଟକରେ କଳିଙ୍ଗଭାରତୀ ଆୟୋଜିତ ଭଞ୍ଜ ଜୟନ୍ତୀରେ ଉପସ୍ଥାପିତ ସନ୍ଦର୍ଭ ।

୧୦ । ସାହିତ୍ୟରେ ଜୀବନ ଦର୍ଶନ, ଉତ୍ତର ଓଡ଼ିଶା ସାଂସ୍କୃତିକ ସମ୍ମେଳନ, ରାଇରଙ୍ଗପୁର, ୧୯୮୦ ।

୧୧ । ସାମାଜିକ ସଂସ୍କାରରେ ସାହିତ୍ୟର ଭୂମିକା, ବରୁଣେଶ୍ୱର ମହାବିଦ୍ୟାଳୟ (ଯାଜପୁର), ବରୁଣେଶ୍ୱର ବକ୍ତୃତାମାଳା ସିରିଜରେ ପ୍ରଦତ୍ତ ଭାଷଣ ।

୧୨ । ଭୁବନେଶ୍ୱର ଲେଖକ ସାମ୍ମୁଖ୍ୟର ବିଭିନ୍ନ ବର୍ଷର (୧୯୮୨,୮୩, ୮୫,୮୬) ସାହିତ୍ୟାସରରେ ରାଉରକେଲା, ବାଲେଶ୍ୱର, ପାରଳାଖେମୁଣ୍ଡି ଓ କେନ୍ଦୁଝରରେ ପ୍ରବନ୍ଧ ଓ ଆଲୋଚନା ଏବଂ ଓଡ଼ିଆ ଭାଷା ସମ୍ପର୍କରେ ପ୍ରଦତ୍ତ ଭାଷଣ ।

୧୩ । ଗଙ୍ଗାଧର ମେହେରଙ୍କ କବି ପ୍ରତିଭା, ଗଙ୍ଗାଧର ମେହେର କଲେଜ, ସମ୍ବଲପୁର ୧୯୮୪ ।

୧୪ । କବିବର ରାଧାନାଥ, ସୋରୋ ରାଧାନାଥ ପାଠାଗାର ପକ୍ଷରୁ ୧୯୬୫-୬୭ରେ ପ୍ରଦତ୍ତ ଭାଷଣ ।

୧୫ । ଭାଗବତ ଧର୍ମ, କେନ୍ଦୁଝର ବିଜ୍ଞାନ କଲେଜ, କେନ୍ଦୁଝରଗଡ଼, ୧୯୬୭ ।

୧୬ । ସଂସ୍କୃତ ଭାଷା ଓ ସାହିତ୍ୟର ମହତ୍ତ୍ୱ, ବାଲେଶ୍ୱର ସଂସ୍କୃତ କଲେଜ, ୧୯୬୯ ।

୧୭ । ମହାକବି କାଳିଦାସ, ୧୯୭୮ରୁ ୮୧ରେ ଭଦ୍ରକ କଲେଜ ସଂସ୍କୃତ ବିଭାଗ ଆୟୋଜିତ ସେମିନାରରେ ଭାଷଣ ।

୧୮ । ସଂସ୍କୃତ ଭାଷା, ବିଶ୍ୱ ସଂସ୍କୃତ ପରିଷଦ, ଭଦ୍ରକ ଶାଖା, ୧୯୮୧ ।

୧୯ । ସାରଳା ଦାସ, ଆଦିକବି ସାରଳା ଦାସ ମହାବିଦ୍ୟାଳୟ, ୧୯୮୬, ସାରଳା ସାହିତ୍ୟ ସଂସଦ, କଟକ ୧୯୮୩ ।

୨୦ । ଭକ୍ତଚରଣ ଦାସ, ରାଜସୁନାଖଳା, ୧୯୮୮ ।

୨୧ । ଓଡ଼ିଆ ଭାଷା ଓ ସାହିତ୍ୟ, ଓଡ଼ିଆ ବିଭାଗ, ବିଶ୍ୱଭାରତୀ, ଶାନ୍ତିନିକେତନ ୧୯୮୪ ।

୨୨ । ଶୂନ୍ୟବାଦ, ମହିମାଧର୍ମ ଗବେଷଣା ପରିଷଦ, ଭୁବନେଶ୍ୱର, ୧୯୮୪ ।

୨୩ । ଗ୍ରାମାୟଣର ଚରିତ୍ର, ପୁରୀ ଗ୍ରାମଦୟା ପରିଷଦ, ୧୯୮୩ ।

୨୪ । ଗ୍ରାମାୟଣର ମହତ୍ତ୍ୱ, ଭଦ୍ରକ ଗ୍ରାମଦୟା ପରିଷଦ, ୧୯୮୨ ।

୨୫ । କବି ନୀଳକଣ୍ଠ, ନୀଳକଣ୍ଠ ଶତବାର୍ଷିକୀ, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୮୪ ।

୨୬ । ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟ ସମସ୍ୟା, ବିଷୁବ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ୧୯୬୧ ।

୨୭ । ସାଂସ୍କୃତିକ ସାହିତ୍ୟର ପୃଷ୍ଠଭୂମି, ବିଷୁବମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଏକ ସାନ୍ଧ୍ୟ ଅଧିବେଶନରେ ସଭାପତି ଭାଷଣ, ୧୯୭୪ ।

୨୮ । ବ୍ୟାସକବି ଫକୀରମୋହନ, ବାଲେଶ୍ୱର, ୧୯୬୮ ।

୨୯ । ଶ୍ରୀକୃଷ୍ଣ ଭାଗବତ ଧର୍ମ, ସତ୍ୟସାଇର ସେବା ସମିତି, ଭଦ୍ରକ ୧୯୭୯ ।

୩୦ । ସାହିତ୍ୟ ସମ୍ମେଳନ, ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ୧୯୬୧ ।

୩୧ । Folk Literature, An International Seminar, Visva Bharati, 1982.

୩୨ । ଅଳଙ୍କାର ଶାସ୍ତ୍ର, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ ଆୟୋଜିତ ୟୁ. ଜି. ସି. ସେମିନାରରେ ପ୍ରଦତ୍ତ ଭାଷଣ, ୧୯୮୪ ।

୩୩ । ଶକ୍ତି ଉପାସନା, ପୂର୍ଣ୍ଣଭର୍ସ, ନୈଶାମରଣି, କଟକ ୨୨ । ୯ । ୯୦ ।

## ପ୍ରାଚ୍ୟବିଦ୍ୟା ସମ୍ମିଳନୀ ଓ ରିଫ୍ରେସର କୋର୍ସ :

୧ । ନିଖିଳଭାରତ ବିଦ୍ୟା ସମ୍ମିଳନୀ, ଭୁବନେଶ୍ୱର, ୧୯୬୧ ।

୨ । ଭାଷା ଓ ସାହିତ୍ୟ ସମାଲୋଚନା, ବାଣୀବିହାରରେ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା ଆୟୋଜିତ ରିଫ୍ରେସର୍ କୋର୍ସରେ ଯୋଗଦାନ ଓ ଆଲୋଚନା, ୧୯୭୯ ।

୩ । ବୈଷ୍ଣବ ସାହିତ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ ଆୟୋଜିତ ରିଫ୍ରେସର କୋର୍ସ (ୟୁ. ଜି. ସି. ଆନୁକୂଲ୍ୟରେ) ପ୍ରଦତ୍ତ ଭାଷଣ ।

୪ । ସାହିତ୍ୟଶାସ୍ତ୍ର (Poetics), ୟୁ. ଜି. ସି. ଆନୁକୂଲ୍ୟରେ ଉତ୍କଳ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଆୟୋଜିତ ରିଫ୍ରେସର କୋର୍ସରେ ଭାଷଣ, ଏତଦ୍‌ବ୍ୟତୀତ ଉକ୍ତର ବହୁ ବିଭିନ୍ନ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ଏବଂ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ-

ମାନଙ୍କରେ ସାହିତ୍ୟ, ସଂସ୍କୃତି, ସମାଜତନ୍ତ୍ର ଧର୍ମ ଓ ଦର୍ଶନ ସମ୍ବନ୍ଧରେ ଓଡ଼ିଶା, ପଶ୍ଚିମବଙ୍ଗ, ବିହାରରେ ବହୁ ଚିନ୍ତାଗର୍ଭକ ଭାଷଣ ପ୍ରଦାନ କରି ଆସିଛନ୍ତି ।

## ସାହିତ୍ୟିକ ଓ ସାଂସ୍କୃତିକ ଭାବ ବିନିମୟ ଯୋଜନା :

ଓଡ଼ିଶା ସାହିତ୍ୟ ଏକାଡେମୀର ସାହିତ୍ୟିକ ଓ ସାଂସ୍କୃତିକ ଭାବ-ବିନିମୟ ଯୋଜନା ଅନୁସାରେ ଡଃ ବଳ ୨୪ । ୩ । ୮୨ ଠାରୁ ୪ । ୪ । ୮୨ ପର୍ଯ୍ୟନ୍ତ ପଶ୍ଚିମବଙ୍ଗର କଲିକତା ଓ ଶାନ୍ତିନିକେତନ ଭ୍ରମଣ କରିଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ବଙ୍ଗଳା ବିଭାଗରେ ଓଡ଼ିଆ ଓ ବଙ୍ଗଳା ସାହିତ୍ୟର ପାରସ୍ପରିକ ପ୍ରଭାବ ଓ ଓଡ଼ିଶାର ଐତିହ୍ୟ ସମ୍ପର୍କରେ ଇଂରାଜୀ, ଓଡ଼ିଆ ବଙ୍ଗଳାରେ ଭାଷଣ ପ୍ରଦାନ କରିଥିଲେ । ଏହାଛଡ଼ା ବଙ୍ଗୀୟ ସାହିତ୍ୟ ପରିଷଦର ସେକ୍ରେଟେରୀ ଓ କର୍ମକର୍ତ୍ତାଙ୍କ ସହ; **Ramakrushna Research Institute; Chaitanya Research Institute,** ଜାତୀୟ ଗ୍ରନ୍ଥାଗାର **(National Library),** ଭାରତୀୟ ଭାଷା ପରିଷଦର ସମ୍ପାଦକ, ଅନ୍ୟ କର୍ମକର୍ତ୍ତା ଏବଂ ବିଶ୍ୱଭାରତୀର ବିଭିନ୍ନ ସାହିତ୍ୟିକ ଓ ପଣ୍ଡିତମାନଙ୍କ ସହ ବଙ୍ଗ ଓ ଓଡ଼ିଶାର ସଂସ୍କୃତି, ଭାଷା ଓ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଥିଲେ ।

## ଭ୍ରମଣ ଓ କ୍ଷେତ୍ରାଧ୍ୟୟନ (Field Study) :

ଗବେଷଣା ଓ ବିଭିନ୍ନ ବିଷୟରେ ଜ୍ଞାନ ଓ ଅନୁଭୂତି ସଞ୍ଚୟ ଉପଲକ୍ଷେ ଡଃ ବଳ ୧୯୮୭ରେ ଉତ୍ତର ଭାରତର ଦିଲ୍ଲୀ, ହରିଦ୍ୱାର, ଋଷିକେଶ, ମଥୁରା, ଆଗ୍ରା ମାର୍ଚ୍ଚ ୩ ଠାରୁ ୨୦ ପର୍ଯ୍ୟନ୍ତ ଭ୍ରମଣ କରି ବିଭିନ୍ନ ସାହିତ୍ୟ, ସଂସ୍କୃତି ଓ ଧର୍ମୀୟ ଅନୁଷ୍ଠାନ ଏବଂ ସେଗୁଡ଼ିକର କର୍ମକର୍ତ୍ତାଙ୍କ ସମ୍ପର୍କରେ ଆସିଥିଲେ ।

୧୯୮୮ରେ ୟୁ.ଜି. ସି. ବୃହତ୍ତର ଗବେଷଣା ଯୋଜନା ଅନୁସାରେ ପୁଣି ଉତ୍ତର ଭାରତ ଭ୍ରମଣ କରିଥିଲେ । ଏହି ସମୟରେ ସେ ହରିଦ୍ୱାରର ବିଭିନ୍ନ ଅନୁଷ୍ଠାନ ଓ ଋଷିକେଶର ଶିବାନନ୍ଦ ଆଶ୍ରମରୁ ଗବେଷଣା ସମ୍ପର୍କରେ ପ୍ରୟୋଜନୀୟ ତଥ୍ୟ ସଂଗ୍ରହ କରିଥିଲେ । ତା'ପରେ ସେ ଦିଲ୍ଲୀ

ହୋଇ ମଥୁରା ଓ ବୃନ୍ଦାବନ ଯାତ୍ରା କରିଥିଲେ । ବୃନ୍ଦାବନର ବିଭିନ୍ନ ମନ୍ଦିର, କୁଞ୍ଜ ଓ ବୈଷ୍ଣବ ଗୋସ୍ୱାମୀଙ୍କର ସମାଧିପୀଠ ଦର୍ଶନ ସହ ବିଭିନ୍ନ ପୁସ୍ତକ ସଂଗ୍ରହ କରିଥିଲେ ଏବଂ ବୈଷ୍ଣବ କାବ୍ୟ ନାଟକ ବର୍ଣ୍ଣିତ ରାଧାକୃଷ୍ଣ ଓ ଗୋପୀଙ୍କର ବିଭିନ୍ନ ଲୀଳାସ୍ଥଳୀ ଯଥା ନନ୍ଦଗ୍ରାମ, ବର୍ଷାଣ (ରାଧାଙ୍କର ପିତୃଗୃହ), ସଙ୍କେତ ବଟ, କମ୍ବାର୍କାଶ୍ରମ, କୁସୁମ ସରୋବର, ବ୍ରହ୍ମକୁଣ୍ଡ, ଗିରିଗୋବର୍ଦ୍ଧନ, ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡ ଦର୍ଶନ କରି ତଥ୍ୟାବଳୀ ସଂଗ୍ରହ କରିଥିଲେ । ପୁନଶ୍ଚ ଫେବୃୟାରୀ ୧୯୮୯ରେ ୟୁ. ଜି. ସି. ଯୋଜନା ଅନୁସାରେ ପଶ୍ଚିମବଙ୍ଗର କାଟୋୟା, ଝାମଟପୁର (ଚୈତନ୍ୟଚରିତାମୃତର ଲେଖକ କୃଷ୍ଣଦାସ କବିରାଜଙ୍କ ଜନ୍ମସ୍ଥଳୀ), ଗଙ୍ଗାକୂଳସ୍ଥ ବ୍ରହ୍ମାନନ୍ଦ ଆଶ୍ରମ, ଶ୍ରୀପାଟସ୍ଥ ଭକ୍ତ ନରହରି ସରକାର ଠାକୁରଙ୍କର ମଠ, ମନ୍ଦିର ଓ ସ୍ଥାନୀୟ ପାଠାଗାର, ନବଦ୍ୱୀପ ଓ ମାୟାପୁରର ବିଭିନ୍ନ ମନ୍ଦିର ଓ ପାଠାଗାର ଦର୍ଶନ କରି ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରି ଶାନ୍ତିନିକେତନ ଯାତ୍ରା କରିଥିଲେ । ସେଠାରେ ଲୋକସାହିତ୍ୟ ସମ୍ପର୍କରେ ଅନୁଷ୍ଠିତ ଏକ ଆନ୍ତର୍ଜାତିକ ସେମିନାର୍‌ରେ ଯୋଗଦାନ କରି ବିଶ୍ୱଭାରତୀ ଗ୍ରନ୍ଥାଗାରରୁ ଗବେଷଣା ସମ୍ପର୍କରେ ତଥ୍ୟ ସଂଗ୍ରହ କରି କଲିକତାର ନାସନାଲ ଲାଇବ୍ରେରୀରେ ଅଧ୍ୟୟନ ଓ ନୋଟ୍ କରିଥିଲେ ।

ସାହିତ୍ୟ ସାଧନାକୁ ଜୀବନରେ ଆନନ୍ଦ ପ୍ରାପ୍ତିର ଅନ୍ୟତମ ମାଧ୍ୟମ ରୂପେ ଗ୍ରହଣ କରିଥିବାରୁ ଏ ପରିଣତ ବୟସରେ ମଧ୍ୟ ଡ଼ଃ ବଳଙ୍କର ଅଧ୍ୟୟନ, ମନନ ଓ ଲେଖା ଚାଲିଛି, ଅନ୍ୟମାନଙ୍କ ପରି ସାଧନା ଓ ଯୋଗ୍ୟତା ନଥାଇ ସମ୍ମାନାର୍ଜନ ଅପଚେଷ୍ଟାର ଊର୍ଦ୍ଧ୍ୱରେ । ଲେଖକ ସ୍ୱତଃସ୍ଫୂର୍ତ୍ତି ଭାବରେ ସମ୍ମାନ ପାଇଲେ, ପ୍ରେରଣା ଓ ଉତ୍ସାହର ପରଶଟିଏ ପାଇଲେ ସେଥିରେ ଆନନ୍ଦ ଥାଏ । ଡ଼ଃ ବଳ ତାଙ୍କର ବିଭିନ୍ନ ଲେଖା ପାଇଁ କେତେକ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କଠାରୁ ବହୁ ଉତ୍ସାହ ଜନକ ପତ୍ର ବିଭିନ୍ନ ସମୟରେ ପାଇଆସୁଛନ୍ତି, ସେଇଟା ତାଙ୍କ ପକ୍ଷରେ ପ୍ରକୃତ ପୁରସ୍କାର, କିନ୍ତୁ ବ୍ୟବହାରିକ ଦୃଷ୍ଟିରୁ କେତେକ ଅନୁଷ୍ଠାନ ସ୍ୱତଃସ୍ଫୂର୍ତ୍ତି ଭାବରେ ତାଙ୍କୁ ସମ୍ମାନିତ ଓ ପୁରସ୍କୃତ କରିଛନ୍ତି, ଯଥା—

୧ । ଓଡ଼ିଶା ସରକାରଙ୍କର ଶିଶୁ ସାହିତ୍ୟ କମିଟି ପକ୍ଷରୁ ୧୯୬୨ରେ ତାଙ୍କର 'ସ୍ରଷ୍ଟା ଓ ସୃଷ୍ଟି' ପୁସ୍ତକ ପାଇଁ ପୁରସ୍କାର ।

୨। କଟକ ପ୍ରଜାତନ୍ତ୍ର ସମିତି ଆନୁକୂଲ୍ୟରେ ୧୯୭୭ ବିଷୁବ ମିଳନ ଉତ୍ସବରେ ନିବନ୍ଧକାର ଓ ସମାଲୋଚକ ଭାବରେ ସମ୍ମାନ ଓ ପୁରସ୍କାର।

୩। 'ମାତୃଭୂମି ଓ ସହକାର' ମଞ୍ଚର ମିଳନୋତ୍ସବରେ ୧୯୮୭ରେ ସାହିତ୍ୟ ସମାଲୋଚକ ଓ ପ୍ରାବନ୍ଧିକ ଭାବରେ ପୁରସ୍କାର।

୪। 'ଜୀବନରଙ୍ଗ' ପକ୍ଷରୁ ୧୯୮୭ରେ ସାହିତ୍ୟ ସମାଲୋଚକ ଭାବରେ ମାନପତ୍ର।

୫। ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ (ପୁରୀ) ପକ୍ଷରୁ ୧୯୯୧ରେ 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର ଓ ମାନପତ୍ର।

୬। କଟକ ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ୧୯୭୪, ବିଷୁବ ମିଳନର ପ୍ରଥମ ସାନ୍ଧ୍ୟ ଅଧିବେଶନରେ ସଭାପତି ଭାବରେ ସମ୍ମାନିତ।

## ସାରସ୍ୱତ ସାଧନା ଓ ରଚନାବଳୀ :

ଛାତ୍ରାବସ୍ଥାରୁ ଡକ୍ଟର ବଳ କବିସୂର୍ଯ୍ୟ ବଳଦେବଙ୍କ ଅନୁସରଣରେ ଆଧ୍ୟାତ୍ମିକ ଚମ୍ପୂ ଗୀତ ରଚନା କରିଥିଲେ। ଚଉତିଶା ଶୈଳୀରେ ରଚିତ ଗୀତଗୁଡ଼ିକ ତାଙ୍କ ଗ୍ରାମର ଜଣେ ଭାଇ ସେ ଗୁଡ଼ିକ ଶିଖି ବିଭିନ୍ନ ଉତ୍ସବରେ ଗାଉଥିଲେ ଏବଂ ମହିମା ସମ୍ପ୍ରଦାୟର ସନ୍ନ୍ୟାସୀ ଭଗବାନ ଦାସ ସେ ଗୁଡ଼ିକର ପ୍ରଶଂସା କରିଥିଲେ। ସଂରକ୍ଷଣ ଅଭାବରୁ ଗୀତଗୁଡ଼ିକର ଅସ୍ତିତ୍ୱ ଲୋପ ପାଇଛି।

ବିଭିନ୍ନ ସମୟରେ ବିଦ୍ୟାଳୟର ଛାତ୍ରଙ୍କ ପାଇଁ ସେ ହୃଦୟସ୍ପର୍ଶୀ କବିତା ରଚନା କରୁଥିଲେ। ଭଦ୍ରକରେ ଅଧ୍ୟାପନା ଆରମ୍ଭ କାଳରେ ସେ କେତେଗୁଡ଼ିଏ ଆଧ୍ୟାତ୍ମିକ ଗୀତି (Spiritual lyric) ରଚନା କରିଥିଲେ ଏବଂ ପତ୍ନୀ ହେମଲତାଙ୍କ ବିୟୋଗ ପରେ ଗୁଡ଼ିଏ ଲିରିକ୍‌ଧର୍ମୀ କବିତା ରଚନା କରିଥିଲେ, ଯେଉଁଗୁଡ଼ିକ 'ଡଗର'ରେ ଧାରାବାହିକ ଭାବରେ ୧୯୭୦-୭୧ ମସିହାରେ ପ୍ରକାଶ ପାଇଥିଲା। କବିତାଗୁଡ଼ିକ ତାଙ୍କର ବେଦନା ବିଜଡ଼ିତ ଅନ୍ତରର ଅନ୍ତରଙ୍ଗ ଅଭିବ୍ୟକ୍ତି ହୋଇଥିବାରୁ ଭାବ, ଭାଷା, ଶବ୍ଦକଳ୍ପ ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ସେଗୁଡ଼ିକ ପ୍ରାଣସ୍ପର୍ଶୀ। ପରେ ପରେ କେତେଗୁଡ଼ିଏ ଉଚ୍ଚାଙ୍ଗ କବିତା ରଚନା କରିଛନ୍ତି।

କାବ୍ୟ କବିତା ମୂଲ୍ୟାୟନରେ ସ୍ରଷ୍ଟାଙ୍କ ସହିତ ସହୃଦୟ ସମୀକ୍ଷକ ଭିତରେ ଏକରୂପତା ( Identification ) ତାଙ୍କର ସମାଲୋଚନା ସନ୍ଦର୍ଭଗୁଡ଼ିକୁ ହୃଦ୍ୟ କରି ପାରିଛି ।

ତାଙ୍କର ସନ୍ଦର୍ଭର ଭାଷା ଓ ଶୈଳୀ ଏକାନ୍ତ ଭାବରେ ରଚନାର ପ୍ରକୃତି ଅନୁରୂପ ଏବଂ ସ୍ୱକୀୟ । ସମଗ୍ର ଭାବରେ ବିଚାର କଲେ ତାଙ୍କର ସାହିତ୍ୟ ସମୀକ୍ଷା ଓ ଗବେଷଣା ସନ୍ଦର୍ଭରେ ସହୃଦୟ ପାଠକ ଜଣେ ମନନଶୀଳ ପ୍ରଜ୍ଞାନିଷ୍ଠ ସୃଷ୍ଟିଧର୍ମୀ ସହୃଦୟ ସମୀକ୍ଷକଙ୍କୁ ଭେଟେ, ଯାହାଙ୍କର ସାହିତ୍ୟିକ ମୂଲ୍ୟାୟନରେ ପୁନଃସୃଷ୍ଟିର ସ୍ୱାଦ ମିଳିଥାଏ ।

## ରଚନାବଳୀ :

(କ) ସାହିତ୍ୟ ସମୀକ୍ଷାମୂଳକ ଗ୍ରନ୍ଥ—ସାହିତ୍ୟାଲୋକ, ସାହିତ୍ୟ ଆଲୋଚନା, ଆଲୋକ ଓ ଆଲୋଚନା, ସାହିତ୍ୟ ଜିଜ୍ଞାସା, କବିବର ରାଧାନାଥ ଓ ଊଷା, ରସକଲ୍ଲୋଳ, ସାହିତ୍ୟିକ ବିଚାର ବିମର୍ଶ, ମେଘେର ସୃଷ୍ଟି ସମୀକ୍ଷା, ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା, ସାହିତ୍ୟ ତତ୍ତ୍ୱ ଓ ସାହିତ୍ୟ ସମୀକ୍ଷା, ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା, ଶ୍ରୀମଦ୍ ଭାଗବତ ଏକ ଅଧ୍ୟୟନ, ରୀତିକାବ୍ୟ ସମ୍ପର୍କରେ, ଆମର ଆଧ୍ୟାତ୍ମିକ ଐତିହ୍ୟ, ସାହିତ୍ୟ ସମାଲୋଚନାର ଶାସ୍ତ୍ରୀୟ ଭୂମିକା (ଯନ୍ତ୍ରସ୍ଥ), ନବରିଦ୍ଧ ଅଷ୍ଟକ (ଯନ୍ତ୍ରସ୍ଥ), ସାହିତ୍ୟ ଓ ସଂସ୍କୃତି, କବି ଓ କାବ୍ୟ (ପ୍ରକାଶ ଅପେକ୍ଷାରେ), ଚିନ୍ତନ ଓ ଚେତନା (ପ୍ରକାଶ ଅପେକ୍ଷାରେ) ।

ଚୌଦଟି ସମାଲୋଚନାମୂଳକ ଗ୍ରନ୍ଥର ଯୋଜନା—ଅଭିମନ୍ୟୁ ସୃଷ୍ଟି ସମୀକ୍ଷା, ଉପେନ୍ଦ୍ର ସୃଷ୍ଟି ସମୀକ୍ଷା, ଦୀନକୃଷ୍ଣ ସୃଷ୍ଟି ସମୀକ୍ଷା, ବଳଦେବ ସୃଷ୍ଟି ସମୀକ୍ଷା, ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ଓ କାଳିଦାସ (ୟୁ.ଜି.ସି ଯୋଜନା) ।

(ଖ) ସାଧାରଣ ପୁସ୍ତକ—ଅମୃତପୁତ୍ର, ସ୍ରଷ୍ଟା ଓ ସୃଷ୍ଟି, କଥା କଳିକା (ଶିଶୁଗଳ୍ପ), ମୂକ ରାଜକନ୍ୟା ଓ ଅନ୍ୟାନ୍ୟ କାହାଣୀ, (ଶିଶୁଗଳ୍ପ), ଅଞ୍ଚଳର ଅଦ୍ଭୁତ କାହାଣୀ (ଶିଶୁଗଳ୍ପ), ଆଦିବାସୀ କାହାଣୀ (ଶିଶୁଗଳ୍ପ), ଅବାଞ୍ଛିତର ଆତ୍ମଲିପି (ଆତ୍ମଜୀବନୀ) (ପ୍ରକାଶ ଅପେକ୍ଷାରେ), ବ୍ରହ୍ମଗାୟତ୍ରୀ (ପ୍ରସ୍ତୁତି ପଥରେ), ସ୍ତବ ଓ ସୂକ୍ତ ସଞ୍ଚୟନ ।

(ଗ) ସମ୍ପାଦିତ ଗ୍ରନ୍ଥ—ମହାମାନବର ସାଗରତୀରେ, ସାଂସ୍କୃତିକା ।

ପ୍ରାୟ ବାଇଶିରୁ ଊର୍ଦ୍ଧ୍ୱ ଅନ୍ୟ ସଂକଳନ ଗ୍ରନ୍ଥମାନଙ୍କରେ ତାଙ୍କର ବହୁ ଉପାଦେୟ ସମୀକ୍ଷାମୂଳକ ସନ୍ଦର୍ଭ ପ୍ରକାଶିତ, ତନ୍ମଧ୍ୟରୁ କେତୋଟିର ଉଲ୍ଲେଖ କରାଯାଉଛି—

୧—ପ୍ରେମ ଚିନ୍ତାମଣି ଓ ଗୋବିନ୍ଦ ଲୀଳାମୃତମ୍, ଅଭିମନ୍ୟୁମାନସ ।

୨—ବୈଷ୍ଣବ କାବ୍ୟରେ ପ୍ରେମ, ରସତତ୍ତ୍ୱ ଓ ବିଦଗ୍ଧ ଚିନ୍ତାମଣି ।

୩—ଆଳଙ୍କାରିକ କାବ୍ୟ ଓ ଉପେନ୍ଦ୍ର ଭଞ୍ଜ, ଉପେନ୍ଦ୍ର ଭଞ୍ଜ ପରିକ୍ରମା ।

୪—ନନାଙ୍କ ପାଞ୍ଜି : ଏକ ଅଭିନବ ଦିଗ୍‌ଦର୍ଶନ, ବ୍ୟାସକବି ଫକୀରମୋହନ ।

୫—ଭଞ୍ଜ କାବ୍ୟ ଓ ନୈଷଧ, ଆମ ସାହିତ୍ୟ ଆମ ଉପେନ୍ଦ୍ର ।

(ଘ) କବିତା, ଆଧ୍ୟାତ୍ମିକ ଗୀତ—ଉକ୍ତର ବଳ ବିଭିନ୍ନ ସମୟରେ କେତେଗୁଡ଼ିଏ କବିତା ଓ ଆଧ୍ୟାତ୍ମିକ ଗୀତ ରଚନା କରିଥିଲେ; ସେଥିମଧ୍ୟରୁ କବିତା ହେଉଛି ୨୦ଟି, ଆଧ୍ୟାତ୍ମିକ ଗୀତ ସଂଖ୍ୟା ୧୭, ଗୋଟିଏ ପଲ୍ଲୀ-ଗୀତ, ଦୁଇଟି ଶିଶୁ କବିତା ।

(ଙ) ଗଳ୍ପ ଓ ଏକାଙ୍କିକା—ପତ୍ନୀ ବିୟୋଗ ପରେ ତାଙ୍କର 'ଶିଖା' ନାମକ ଗଳ୍ପ ଓ 'ମାଛ ଓ ମଣିଷ' ବୋଲି ଅନ୍ୟ ଏକ ଗଳ୍ପ (ଅସମିୟା ମାଛ ଆରୁମାନୁହ ଗଳ୍ପର ଅନୁବାଦ) 'ଡଗର'ରେ ପ୍ରକାଶିତ ହୋଇଥିଲି । ସେ 'ନବସୃଷ୍ଟି' ଓ 'ଅଭିଯୋଗ' ଶୀର୍ଷକ ଦୁଇଟି ରୂପକ ଧର୍ମୀ ଏକାଙ୍କିକା ବହୁ ପୂର୍ବରୁ ଭଦ୍ରକରେ ରଚନା କରିଥିଲେ ।

(ଚ) ଇଂରାଜୀ ରଚନା—ଓଡ଼ିଶାର ମଧ୍ୟଯୁଗର କେତେକ କବି ଓ କାବ୍ୟ ସମ୍ପର୍କରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପ୍ରକାଶିତ **Encyclopaedia of Indian Literature (E. I. L)**ରେ ତାଙ୍କର ନ'ଟି କ୍ଷୁଦ୍ର ପ୍ରବନ୍ଧ ଏବଂ କଲିକତାର **M. P. Birla Foundation** ପ୍ରକାଶିତ **Encyclopaedia Asian**ରେ ଦଶଟି ଲେଖା ପ୍ରକାଶିତ । ଏହାଛଡ଼ା ତାଙ୍କର 'ଶ୍ରୀମଦ୍‌ଭାଗବତ ଓ ଜଗନ୍ନାଥ ଦାସ' ଶୀର୍ଷକ ପ୍ରବନ୍ଧଟି ଅଧ୍ୟାପକ ଶୁଭେନ୍ଦୁ ମୁଣ୍ଡଙ୍କ ଦ୍ୱାରା ଇଂରାଜୀରେ ଅନୂଦିତ ହୋଇଛି ।

ଏହାଛଡ଼ା ଆଉ କେତୋଟି ପ୍ରବନ୍ଧ ତାଙ୍କ ଦ୍ୱାରା ଇଂରାଜୀରେ ରଚିତ ଓ ନିର୍ଦ୍ଦେଶିତ, ଯଥା—

(1) Orissan Heritage, (2) Prominent Poets of Keonjhar District, (3) Contribution of Women to Oriya Literature, (4) Contribution of Bhadrak to Oriya Literature, (5) Mughal Tamsa.

**ପରିବାର :**

ଡକ୍ଟର ବଳଙ୍କର ପତ୍ନୀ ପ୍ରାଧ୍ୟାପିକା ଡକ୍ଟର ଶାନ୍ତି ମହାପାତ୍ର(ବଳ) ଓଡ଼ିଶାର ବିଭିନ୍ନ କଲେଜରେ ଅଧ୍ୟାପନା କରି ଏବେ କଟକର ଶୈଳବାଳା ମହିଳା କଲେଜର ଇତିହାସ ବିଭାଗରେ ଅବସ୍ଥାପିତା । ସେ ମୁଖ୍ୟତଃ ଜଣେ ଐତିହାସିକ ଗଳ୍ପ ଓ ଉପନ୍ୟାସ ଲେଖିକା ଭାବରେ ଓଡ଼ିଶାରେ ସୁପରିଚିତା । ସେ ତାଙ୍କର 'Vaisnavite Trend in Oriya Literature' ଶୀର୍ଷକ ଗବେଷଣା ସନ୍ଦର୍ଭ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଇତିହାସରେ ପି. ଏଚ୍. ଡି. ଉପାଧିରେ ଭୂଷିତା । ତାଙ୍କର ସନ୍ଦର୍ଭ କଲିକତାର Punthi Pustakଙ୍କ ଦ୍ୱାରା ପ୍ରକାଶିତ । ସେ କବିତା ପାଇଁ ମାତୃଭୂମି ଓ ସହକାରର ମକର ମିଳନୋତ୍ସବରେ ଏବଂ ଗଳ୍ପ ପାଇଁ 'ଜୀବନରଙ୍ଗ'ର ବାର୍ଷିକ ଉତ୍ସବରେ ସମ୍ମାନିତା ।

ଡକ୍ଟର ବଳଙ୍କର ଜ୍ୟେଷ୍ଠପୁତ୍ର ଡକ୍ଟର ମିହିର କୁମାର ବଳ ସରକାରୀ ଚାକିରି ଛାଡ଼ି ଜଣେ ଚକ୍ଷୁ ବିଶେଷଜ୍ଞ ଭାବରେ ବ୍ରହ୍ମପୁରରେ ଅବସ୍ଥାପିତ । ସେ ନିଜ ପ୍ରତିଷ୍ଠିତ Ecos Eye Hospitalର Director; ପୁତ୍ରବଧୂ ଜଣେ ପ୍ରସୂତିରୋଗ ବିଶେଷଜ୍ଞା । ଦ୍ୱିତୀୟ ପୁତ୍ର ତପନ କୁମାର ସେଣ୍ଟ୍ରାଲ ରିଜର୍ଭ ପୁଲିସ ଫୋର୍ସର ୭୫ ବ୍ୟାଟାଲିୟନର ଜଣେ ସବ୍-ଇନସ୍‌ପେକ୍ଟର । ଦୁର୍ଗାପୁର, ଭୁବନେଶ୍ୱର ଓ ପଞ୍ଜାବ ପରେ ଏବେ ମଧ୍ୟପ୍ରଦେଶର ନିମଚ୍ଛାରେ ଅବସ୍ଥାପିତ ।

ତୃତୀୟ ପୁତ୍ର ଅରୁଣ କୁମାର ଜଣେ ପ୍ରଥମ ଶ୍ରେଣୀର ମେଧାବୀ ଛାତ୍ର । ସେ ବିଭିନ୍ନ ସ୍ତରରେ ସରକାରୀ ବୃତ୍ତି ଲାଭ କରି ଉତ୍କଳ ବିଶ୍ୱ-ବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ (ଅନର୍ସ) ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଜାତୀୟ ବୃତ୍ତି ହାସଲ କରିଥିଲେ । ଦିଲ୍ଲୀ ଜବାହରଲାଲ୍

ନେହେରୁ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ରେ 'School of International Studies) ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଫେଲୋସିପ୍ ପାଇ ଏମ୍. ଫିଲ୍ ଅଧ୍ୟୟନ କରୁଥିଲେ । ଏମ୍. ଫିଲ୍ ପରେ ପି. ଏଚ୍. ଡ଼ି. ପାଇଁ ଗବେଷଣା କରୁଥିଲେ । ଇତିମଧ୍ୟରେ ଆଇ. ଏ. ଏସ୍.ରେ ନିର୍ବାଚିତ ହୋଇ ସେ ପଶ୍ଚିମବଙ୍ଗରେ ଅବସ୍ଥାପିତ ହେଲେ । ମାଲଦା, କାଟୋୟା (ବର୍ଦ୍ଧମାନ), ପୁରୁଲିଆ, ଦାର୍ଜିଲିଂ ପରେ ବର୍ତ୍ତମାନ ସେ ଉତ୍ତର ଚବିଶି ପ୍ରଗଣା ଜିଲ୍ଲାର ଅତିରିକ୍ତ ଜିଲ୍ଲା ପ୍ରଶାସକ (A D. M) ଭାବରେ ଅବସ୍ଥାପିତ । ଛାତ୍ରାବସ୍ଥାରେ ଇଂରେଜୀ, ଓଡ଼ିଆ ଓ ହିନ୍ଦୀରେ ଶ୍ରେଷ୍ଠ ତର୍କ-ପ୍ରତିଯୋଗୀ, ପ୍ରାବନ୍ଧିକ ଓ ହାସ୍ୟାଭିନେତା (Comedian) ଭାବରେ ସେ ବହୁ ପୁରସ୍କାରପ୍ରାପ୍ତ । ହିନ୍ଦୀ ଓ ବଙ୍ଗଳା ଭାଷାରେ ସେ ପ୍ରବୀଣତା ଲାଭ କରିଛନ୍ତି । ପ୍ରଶାସକ ଭାବରେ ସେ ବିଭିନ୍ନ ଦିଗ ପ୍ରତି ସକ୍ରିୟ ଧ୍ୟାନ ଦେଇ ଶିକ୍ଷା ଓ ସାଂସ୍କୃତିକ ବିକାଶ କ୍ଷେତ୍ରରେ ଲୋକପ୍ରିୟତା ଅର୍ଜନ କରିଛନ୍ତି ।

ଚତୁର୍ଥ ପୁତ୍ର ଅଂଶୁମାନ ଉଚ୍ଚ ପ୍ରଥମ ଶ୍ରେଣୀରେ ପଦାର୍ଥ ବିଜ୍ଞାନ ଅନର୍ସରେ ବି. ଏସ୍. ସି. ପାଶ୍ କରି କଲିକତାରେ ଚାର୍ଟାର୍ଡ଼ ଏକାଉଣ୍ଟେନ୍‌ସି କରୁଛନ୍ତି । କନ୍ୟା ମହାତପା ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି +।-୨ ଶ୍ରେଣୀର ଦ୍ୱିତୀୟ ବାର୍ଷିକ ଛାତ୍ରୀ । ସେ ଚିତ୍ରବିଦ୍ୟା, ସଙ୍ଗୀତ ଓ ହିନ୍ଦୀରେ ଡିପ୍ଲୋମା ହାସଲ କରିଛନ୍ତି । ପଞ୍ଚମପୁତ୍ର ପିନାକୀ ସେକେଣ୍ଡାରିବୋର୍ଡ଼ ହାଇସ୍କୁଲର ନବମ ଶ୍ରେଣୀର ଛାତ୍ର । ସାନମାମୁଁ ବସନ୍ତ କୁମାରଙ୍କ ପୁତ୍ର ଶମ୍ଭୁନାଥ ଜଣେ ସହକାରୀ ଯନ୍ତ୍ରୀ, ପୁତ୍ର ଗୋପବନ୍ଧୁ ଜଣେ ଶିଳ୍ପୀ ଚିକିତ୍ସା ବିଶେଷଜ୍ଞ ।

## ବ୍ୟକ୍ତିଗତ ଜୀବନାଦର୍ଶ :

ଡକ୍ଟର ବଳଙ୍କର ପିତା ନନ୍ଦକିଶୋର ସାହୁ ଥିଲେ ଜଣେ ସରଳ, ଅମାୟିକ ଓ ଧର୍ମପ୍ରାଣ ବ୍ୟକ୍ତି । ସେ ଭାଗବତ ଆଦର୍ଶରେ ନିଜର ଗାର୍ହସ୍ଥ୍ୟ ଜୀବନକୁ ନିୟନ୍ତ୍ରିତ କରି ସତ୍ୟ ଓ ନୀତି ପ୍ରତିଷ୍ଠିତ ମାର୍ଗରେ ଜୀବନ କଟାଉଥିଲେ ।

ଭାରତର ଆଧ୍ୟାତ୍ମିକ-ସଂସ୍କୃତି ଡଃ ବଳଙ୍କର ଜୀବନ ଓ ସାଧନାର ଆଦର୍ଶ, ଏଥିରେ ତାଙ୍କର ଗଭୀର ପ୍ରତ୍ୟୟ । ବ୍ୟକ୍ତିଗତ ଓ ସାମାଜିକ

ଜୀବନରେ ତାଙ୍କର କର୍ମ-ସୂଚୀ ଅନ୍ୟମାନଙ୍କ ଠାରୁ ବହୁ ପୃଥକ୍ । ଜୀବନର ପ୍ରତ୍ୟେକ କର୍ମ ମୂଳରେ ସେ ଭଗବତ୍ ନିର୍ଦ୍ଦେଶ ଓ ପ୍ରେରଣା ଅନୁଭବ କରିଥା'ନ୍ତି; ସେଥିପାଇଁ ପ୍ରତ୍ୟେକ ଚିନ୍ତା, ପ୍ରତ୍ୟେକ କର୍ମ ସେ ଭଗବାନଙ୍କ ଠାରେ ନିବେଦନ କରିଥା'ନ୍ତି—'ଯତ୍କରୋଷି ଯଦଶ୍ନାସି' ଏଇ ଗୀତା ବାଣୀ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା । ଜଗତ୍ ଓ ଜୀବନ ପ୍ରତି ରହିଛି ତାଙ୍କର ନିର୍ଲିପ୍ତ ମମତା, ପ୍ରତ୍ୟେକ ଘଟଣା ପ୍ରତି ରହିଛି ତାଙ୍କର ଏକ ଅସ୍ତ୍ୟର୍ଥକ ବିଶ୍ୱାସଭିତ୍ତିକ ଦୃଷ୍ଟିଭଙ୍ଗୀ (Positive Attitude).

ଡକ୍ଟର ବଳଙ୍କର ଶାନ୍ତ ସମାହିତ ପ୍ରଚ୍ଛନ୍ନନିଷ୍ଠ ଜୀବନ, ତାଙ୍କର ଜୀବନବ୍ୟାପୀ ସାରସ୍ୱତ ସାଧନା ବର୍ତ୍ତମାନର ଅବକ୍ଷୟଗ୍ରସ୍ତ ସମାଜରେ ଛାତ୍ର, ଅଧ୍ୟାପକ, ଗବେଷକ ଓ ସାଧାରଣ ଗୁଣଗ୍ରାହୀ ଶ୍ରଦ୍ଧାଶୀଳ ବ୍ୟକ୍ତିଙ୍କ ପକ୍ଷରେ ଏକ ଜ୍ୱଳନ୍ତ ଆଦର୍ଶ । ଦୀର୍ଘକାଳର ଅଧ୍ୟାପନା, ସାହିତ୍ୟସାଧନା ଏବଂ ଛାତ୍ର ଓ ଅଧ୍ୟାପକଙ୍କ ମେଳରେ ବାସ ହେତୁ ତାଙ୍କର ଅନ୍ତର ସେମାନଙ୍କର ଶ୍ରେୟଃ ନିମିତ୍ତ ଉଦ୍‌ବେଳ । ତାଙ୍କର ଅପ୍ରକାଶିତ 'ଅବାଞ୍ଛିତର ଆତ୍ମଲିପି' (ଆତ୍ମଜୀବନୀ) ଛାତ୍ର ଓ ଅଧ୍ୟାପକଙ୍କର କଲ୍ୟାଣ ବାଣୀରେ ଅନନ୍ତଗର୍ଭା । ଡକ୍ଟର ବଳଙ୍କର ଆଦର୍ଶରେ ଏମାନେ କିଞ୍ଚିତ୍‌ମାତ୍ର ଅନୁପ୍ରାଣିତ ହୋଇ ପାରିଲେ ତାହା ତାଙ୍କ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ ହେବ ।



ପ୍ରକାଶକ—

# ଶ୍ରୀଯୁକ୍ତ ଅଭିରାମ ମହାପାତ୍ର

ଡକ୍ଟର **ପ୍ରସନ୍ନ କୁମାର ମିଶ୍ର**

ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ଓଡ଼ିଆ ପ୍ରକାଶନ ଜଗତରେ ଏକ ଶୁଭ ନାମ, ଯିଏ ସ୍ୱକୀୟ ନିଷ୍ଠା ବଳରେ ବହୁ ଉପାଦେୟ ଗ୍ରନ୍ଥ ପ୍ରକାଶ କରି ପିତୃ-ପ୍ରତିଷ୍ଠ ଅନୁଷ୍ଠାନ 'ଗ୍ରନ୍ଥମନ୍ଦିର'ର ନାମ ସାର୍ଥକ କରିଛନ୍ତି ।

ଚିଲିକା ତଟବର୍ତ୍ତୀ ବାଣପୁର ଅନ୍ତର୍ଗତ କୁମାରୀଙ୍ଗ ଶାସନର ନାମ ଓଡ଼ିଆ ସାହିତ୍ୟର ବିଦ୍ୱାନ୍‌ଙ୍କ ନିକଟରେ ଅପରିଚିତ ନୁହେଁ । 'ନଅାଁଖୁଣ୍ଟା'ର ସମ୍ପାଦକ କବି ଗୋଦାବରୀଶ ମହାପାତ୍ରଙ୍କ ଜନ୍ମ-ଗ୍ରାମ ରୂପେ ତାହା ସୁବିଦିତ । ସେଇ କୁମାରୀଙ୍ଗ ଶାସନରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଶ୍ରୀ ଅଭିରାମ ମହାପାତ୍ରଙ୍କ ଜନ୍ମ ହୋଇଥିଲା ଖ୍ରୀ: ଅ: ୧୯୩୩, ମାର୍ଚ୍ଚ ମାସ ୩୦ ତାରିଖରେ । ଗ୍ରନ୍ଥମନ୍ଦିରର ପ୍ରତିଷ୍ଠାତା ପିତା ଶ୍ରୀ ଶ୍ରୀଧର ମହାପାତ୍ର ଓ ମାତା ଶ୍ରୀମତୀ ଗୌରୀ ଦେବୀଙ୍କର ସେ ଦ୍ୱିତୀୟ ପୁତ୍ର ।

ମହାପାତ୍ର ପରିବାରରେ ସଂସ୍କୃତ ଓ ସାହିତ୍ୟ ଚର୍ଚ୍ଚାର ଏକ ଦୀର୍ଘ ପରମ୍ପରା ରହିଛି । ଅଭିରାମଙ୍କ ପିତାମହ ପଣ୍ଡିତ ଗଙ୍ଗାଧର ମହାପାତ୍ର ଜଣେ ସଂସ୍କୃତ ଭାଷାରେ ଅଭିଜ୍ଞ ପଣ୍ଡିତ ଓ ବିଦ୍ୟାନୁରାଗୀ ଥିଲେ । ଏହି ପାଣ୍ଡିତ୍ୟ ଓ ବିଦ୍ୟାନୁରାଗର ପ୍ରଭାବ ତାଙ୍କ ପରବର୍ତ୍ତୀ ଦାୟାଦ ପୁଅ ଓ ନାତିଙ୍କ ଉପରେ ଯେ ପଡ଼ିଥିଲା ଏଥିରେ ସନ୍ଦେହ ନାହିଁ । କୁମାରୀଙ୍ଗ ଶାସନ ନିବାସୀଙ୍କର ଅନ୍ୟ ଏକ ଗର୍ବ ଓ ଗୌରବ ଏହି ଯେ ସେହି ଶାସନରେ ସମସ୍ତେ ଶିକ୍ଷାପ୍ରାପ୍ତ ଓ ମାର୍ଜିତ ରୁଚିସମ୍ପନ୍ନ ।

ଏହି ଭଳି ଏକ ଗ୍ରାମ—'ଯେଉଁଠି ବିଦ୍ୟା ଅଟଇ ମହାଧନ'—ବୋଲି ସମସ୍ତେ ଅନୁଭବ କରୁଥିଲେ—ସେହି ଶାସନର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଅଭିରାମଙ୍କ ଖଡ଼ିଛୁଆଁ ଓ ପ୍ରାଥମିକ ଶିକ୍ଷା ସମାପ୍ତ ହୋଇଥିଲା । ସେତେବେଳେ ତାଙ୍କ ପିତା ଶ୍ରୀଧର ମହାପାତ୍ର ବ୍ରହ୍ମପୁର-ଠାରେ ଥିବା ଷ୍ଟୁଡେଣ୍ଟସ୍ ଷ୍ଟୋର୍ସର ଅନ୍ୟତମ କର୍ମଚାରୀ ଥା'ନ୍ତି । ତେଣୁ ପିତାମହ, ପିତାମହୀ ଓ ମାତାଙ୍କ ଗାରେ ହିଁ ତାଙ୍କର ଶୈଶବ ଯାପିତ ହୋଇଥିଲା ।

ଗ୍ରାମ ବିଦ୍ୟାଳୟର ତତ୍କାଳୀନ ଶିକ୍ଷକଦ୍ୱୟ ଶ୍ରୀ ସୋମନାଥ ମହାପାତ୍ର ଓ ବାନାମ୍ବର ମହାପାତ୍ରଙ୍କ ସୁନଜରରେ ଓ ଯତ୍ନରେ ତାଙ୍କର ବାଲ୍ୟଶିକ୍ଷା ସମାପ୍ତ ହୋଇଥିଲା । ଭଲ ଛାତ୍ରଥିବାରୁ ଶିକ୍ଷକଙ୍କର ସେ ପ୍ରିୟ ଥିଲେ ଓ ଶ୍ରେଣୀରେ ପ୍ରଥମ ସ୍ଥାନ ପାଉଥିଲେ ।

ଗ୍ରାମ ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା ସମାପ୍ତ କରି ଅଭିରାମ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରତିଷ୍ଠିତ ବାଣପୁର ହାଇସ୍କୁଲରେ ନାମ ଲେଖାଇଲେ ଓ ସପ୍ତମ ଶ୍ରେଣୀ ଯାଏଁ ସେଠାରେ ଅଧ୍ୟୟନ କଲେ । ବାଣପୁର ହାଇସ୍କୁଲର ତତ୍କାଳୀନ ଛାତ୍ର-ବତ୍ସଳ ଶିକ୍ଷକ ଶ୍ରୀ ଜଗନ୍ନାଥ ମହାପାତ୍ର, ଶ୍ରୀ ଲକ୍ଷ୍ମୀଧର ଶତପଥୀ, ପଣ୍ଡିତ ନାରାୟଣ ମହାପାତ୍ର ଓ ଶ୍ରୀ ଭଗବାନ ରଥଙ୍କ ତତ୍ତ୍ୱାବଧାନରେ ତାଙ୍କର ଛାତ୍ର-ଜୀବନ ବିକଶିତ ହୋଇଥିଲା । ସେଠାରେ ଶ୍ରେଣୀରେ ମଧ୍ୟ ପ୍ରଥମସ୍ଥାନ ଅଧିକାର କରି ସମସ୍ତଙ୍କର ଶ୍ରଦ୍ଧା-ଭାଜନ ହୋଇ ପାରିଥିଲେ ସେ ।

ସପ୍ତମ ଶ୍ରେଣୀ ଉତ୍ତୀର୍ଣ୍ଣ ହେବା ପରେ ଅଭିରାମ ଗଲେ ବ୍ରହ୍ମପୁର, ପିତା ଓ ମାତାଙ୍କ ନିକଟକୁ । ବାଣପୁର ଛାଡ଼ିଲେ ସିନା କିନ୍ତୁ ଅଭିରାମଙ୍କ ମନରେ ଶାଳିଆ ନଈ, ଘଣ୍ଟଶିଳା ପାହାଡ଼, ମାମୁ ଭଣଜାର କିମ୍ବଦନ୍ତୀ ଓ ମାଳାମ୍ବୁ ଚକଡ଼ାର ସ୍ମୃତି ଚିରକାଳ ଲିପିବଦ୍ଧ ହୋଇ ରହିଯାଇଛି ।

ବ୍ରହ୍ମପୁରରେ ଅଭିରାମ ନାମ ଲେଖାଇଲେ ଖଲ୍ଲିକୋଟ କଲେଜିଏଟ୍ ସ୍କୁଲରେ । ତାଙ୍କ ପିତା ଶ୍ରୀଧର ମହାପାତ୍ର ସେହି ବିଦ୍ୟାଳୟର ପୂର୍ବତନ ଛାତ୍ର ଥିଲେ (ସେତେବେଳେ ବ୍ରହ୍ମପୁର ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଥିଲା ।) ଓ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେସନ ପାସ୍ କରିଥିଲେ । ପିତାଙ୍କ ପଦାଙ୍କ

ଯଥାଯଥ ଭାବେ ଅନୁସରଣ କଲେ ଅଭିରାମ । ସେଇ ବିଦ୍ୟାଳୟର ତତ୍‌କାଳୀନ ପ୍ରଖ୍ୟାତ ଶିକ୍ଷକବୃନ୍ଦ ସର୍ବଶ୍ରୀ ରଘୁନନ୍ଦନ ପଟ୍ଟନାୟକ, ରଘୁନାଥ ଆଚାର୍ଯ୍ୟ, ରଘୁନାଥ ପାଢ଼ୀ, ପଣ୍ଡିତ ଜଗନ୍ନାଥ ରଥ ଶାସ୍ତ୍ରୀଙ୍କ ଯତ୍ନରେ ଅଭିରାମ ମଧ୍ୟ ପିତାଙ୍କ ସଦୃଶ ଖ୍ରୀ: ୧୯୫୦ ରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କରିଥିଲେ । ସେ ସମୟରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରଙ୍କ ସଂଖ୍ୟା ଥିଲା ଅତ୍ୟନ୍ତ ସୀମାବଦ୍ଧ । ତେଣୁ ଅଭିରାମ ଯେ ସତକୁସତ ଜଣେ ଉତ୍ତମ ଛାତ୍ର ଥିଲେ—ଏହା ସ୍ୱୀକାର କରିବାକୁ ହେବ । ସେ ବର୍ଷ ତାଙ୍କ ସ୍କୁଲରୁ ଅନ୍ୟ କୌଣସି ଛାତ୍ର ପ୍ରଥମ ଶ୍ରେଣୀ ଲାଭ କରି ନଥିବା ସ୍ଥଳେ ଅଭିରାମଙ୍କ କୃତିତ୍ୱ ଯଥାର୍ଥରେ ଥିଲା ଉଲ୍ଲେଖନୀୟ । ତା'ଛଡ଼ା ସମଗ୍ର ଗଞ୍ଜାମ ଜିଲ୍ଲାରେ ସେ ସର୍ବୋଚ୍ଚ ନମ୍ବର ହାସଲ କରିବାର ଗୌରବ ଅର୍ଜନ କରି ୫୦୦ ଟଙ୍କା ବୃତ୍ତି ଲାଭ କରିଥିଲେ ।

ତା'ପରେ ଅଭିରାମ ବ୍ରହ୍ମପୁରର ଖଲ୍ଲିକୋଟ କଲେଜରେ ବିଜ୍ଞାନ ଶ୍ରେଣୀରେ ନାଁ ଲେଖାଇଲେ । କିନ୍ତୁ ବିଜ୍ଞାନ ପାଠ ସମ୍ଭବତଃ ତାଙ୍କର ସ୍ୱଭାବ ଓ ରୁଚିର ଅନୁକୂଳ ନଥିଲା । ସେ ଆଇ. ଏସ୍. ସି.ରେ ଦ୍ୱିତୀୟ ଶ୍ରେଣୀ ପାଇଲେ । ସେତିକିରେ ତାଙ୍କ ବିଜ୍ଞାନ-ଶିକ୍ଷାରେ ଡୋର ବନ୍ଧାଗଲା । ପରେ ସେ ଆସିଲେ କଟକ ଓ ରେଭେନ୍‌ସା କଲେଜରେ ବି.ଏ. ଶ୍ରେଣୀରେ ଅଧ୍ୟୟନ କଲେ । କିନ୍ତୁ କଟକରେ ସେ ରହୁଥିବା ସ୍ଥାନର ଅସ୍ୱାସ୍ଥ୍ୟକର ପରିବେଶ ଓ ଖାଦ୍ୟପେୟ ଯୋଗେ ବାରମ୍ବାର ଅସୁସ୍ଥ ହେବାରୁ ପୁଣି ବ୍ରହ୍ମପୁର ଫେରିଲେ ଓ ଖଲ୍ଲିକୋଟ କଲେଜରେ ବି.ଏ.ର ଶେଷ ବର୍ଷରେ (ସେ କାଳର ୪ର୍ଥ ବର୍ଷ) ନାମ ଲେଖେଇଲେ ଓ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

ଅଭିରାମଙ୍କର ଇଚ୍ଛାଥିଲା ଲ' କଲେଜରେ ପଢ଼ି ଆଇନଜ୍ଞ ହେବାକୁ । କିନ୍ତୁ ତା' ଇଚ୍ଛାରେ ହିଁ ରହିଗଲା । ସେତିକିବେଳେ ପିତା ଶ୍ରୀଧର ମହାପାତ୍ର ପରିସ୍ଥିତିର ବାଧ୍ୟ ବାଧକତାରେ ସ୍ୱାଧୀନ ଭାବେ ବ୍ୟବସାୟ କରିବା ପାଇଁ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ିଲେ ଯା'ର ନାମ ରହିଲା 'ଗ୍ରନ୍ଥମନ୍ଦିର' (ଖ୍ରୀ ୧୯୫୨) ରେ । ପିତାଙ୍କର ସେହି ଦୁଃସମୟରେ ଗ୍ରନ୍ଥମନ୍ଦିର କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଅଭିରାମ ରହିଗଲେ 'ଗ୍ରନ୍ଥମନ୍ଦିର'ରେ । ଯୋଗ୍ୟ ପିତାଙ୍କର ଉପଯୁକ୍ତ ସନ୍ତାନ ରୂପେ ସେ ସେଇ

ଦିନରୁ ଗ୍ରନ୍ଥମନ୍ଦିର ସୁରକ୍ଷା ଓ ବିକାଶ ଭାର ବହନ କରି ଆସିଛନ୍ତି । ତାଙ୍କ ସ୍ୱାଧୀନଚେତା ଜୀବନର ଅଭିଳାଷ ଥିଲା ଆଇନଜ୍ଞ ହେବାକୁ—ପ୍ରତିକୂଳ ପରିସ୍ଥିତିରେ ସେ ଅଭିଳାଷ ତ ପୂରଣ ହୋଇପାରିଲା ନାହିଁ—ତେଣୁ ପୁସ୍ତକ ବ୍ୟବସାୟର ସ୍ୱାଧୀନ ସାଂସ୍କୃତିକ ଜୀବନକୁ ସେ ଜୀବନର ପନ୍ଥା ରୂପେ ଗ୍ରହଣ କରିନେଲେ ।

ବାସ୍ତବିକ ଗ୍ରନ୍ଥମନ୍ଦିରର ଜନ୍ମ-ଜାତକ ସହିତ ଅଭିରାମଙ୍କ କର୍ମମୟ ଜୀବନ ଓତଃପ୍ରୋତ ଭାବେ ଜଡ଼ିତ । ସେ 'ଗ୍ରନ୍ଥମନ୍ଦିର'କୁ କେବଳ ତାଙ୍କର ଜୀବିକାର୍ଜନର ଉପାୟ ଭାବେ ଗ୍ରହଣ କରି ନାହାନ୍ତି ; ତାହା ହୋଇଛି ଅଭିରାମଙ୍କର ଜୀବନ ଓ ଦର୍ଶନ ମଧ୍ୟ । 'ଯେତେ ଦିନ ସଂସାରରେ ଥିବି, ଗ୍ରନ୍ଥମନ୍ଦିରରେ ଥିବି'—ଏଇପରି ଏକ ପବିତ୍ର ନିଶାରେ ଅଭିରାମ ମହାପାତ୍ର ଦୀର୍ଘ ତ୍ରିଶ ବର୍ଷ ଧରି ଓଡ଼ିଆ ବହି ପ୍ରକାଶ କରି ଆସୁଛନ୍ତି ।

ପ୍ରକାଶନ କ୍ଷେତ୍ରରେ ଅଭିରାମ ମହାପାତ୍ରଙ୍କ ଉଦ୍ୟମ ଉଲ୍ଲେଖ-ଯୋଗ୍ୟ ଭାବେ ପ୍ରଶଂସନୀୟ । ରୁଚିପୂର୍ଣ୍ଣ ସାହିତ୍ୟ ପୁସ୍ତକ ନିର୍ଭୁଲ ଭାବେ ଛାପିବା ଦିଗରେ ତାଙ୍କର ପ୍ରଚେଷ୍ଟା ଓ ସାଫଲ୍ୟ ବାସ୍ତବିକ ଅଭିନନ୍ଦନୀୟ । ଏମିତି କିଛି ବହି 'ଗ୍ରନ୍ଥମନ୍ଦିର' ପ୍ରକାଶ କରିନାହିଁ ଯାହାର ପ୍ରୁଫ୍ ନିଜେ ଅଭିରାମ ମହାପାତ୍ର ଦେଖି ନାହାନ୍ତି । ପ୍ରୁଫ୍ ସଂଶୋଧନ କରିବା ଭଳି ଏକ ବିରକ୍ତିକର କାର୍ଯ୍ୟ ଭିତରେ ସତରେ ଯେ ଏକ ଆନନ୍ଦ ଲୁଚି ରହିଛି—ସେ ଉପଲବ୍ଧି କେବଳ ଶ୍ରୀ ମହାପାତ୍ରଙ୍କର ହିଁ ଅଛି । ପ୍ରକାଶନ କ୍ଷେତ୍ରରେ ଯଥାସମ୍ଭବ ନିର୍ଭୁଲ ଓ ସୁଷମ ମୁଦ୍ରଣ ହେଉଛି ପ୍ରଥମ ପୁଣ୍ୟ, କାରଣ ତା' ବ୍ୟତିରେକେ ଅର୍ଥ ଅନର୍ଥ ହୋଇ ସାହିତ୍ୟ ନଷ୍ଟ ଓ ପ୍ରତିଭା ବିକଳାଙ୍ଗ ହୋଇଥାଏ—ଏହା ତାଙ୍କର ଆଦର୍ଶ । ସେଇ କାରଣରୁ ଶ୍ରୀ ମହାପାତ୍ର ଯେ ଏକ ପବିତ୍ର କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ପାଣ୍ଡୁଲିପି ନିର୍ବାଚନ ଓ ପ୍ରୁଫ୍ ସଂଶୋଧନ ସମ୍ପର୍କରେ ଶ୍ରୀ ମହାପାତ୍ର କହନ୍ତି ଯେ ଓଡ଼ିଆ ପ୍ରକାଶକ ଯେହେତୁ ପାଣ୍ଡୁଲିପି ନିର୍ବାଚନ ଓ ପ୍ରୁଫ୍ ସଂଶୋଧନ ପାଇଁ ଯଥାର୍ଥରେ ବିଦ୍ୱାନମାନଙ୍କୁ ନିଯୁକ୍ତି ଦେବାକୁ ଅକ୍ଷମ (କାରଣ ସେଥିପାଇଁ ପ୍ରୟୋଜନ ଅର୍ଥ ବ୍ୟୟ କରିବା

ସମ୍ଭବ ନୁହେଁ) ସେଥିପାଇଁ ଏ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଟି ନିଜେ ପ୍ରକାଶକ ହାତକୁ ନେବା ଉଚିତ ।

'ଗ୍ରନ୍ଥମନ୍ଦିର' ତରଫରୁ ଶ୍ରୀ ମହାପାତ୍ର ସବୁ ଧରଣର ସାହିତ୍ୟ ପ୍ରକାଶ କରିଛନ୍ତି । କୌଣସି ବିଭାଗ ଅବହେଳିତ ହୋଇ ରହିନି । ସୃଜନଶୀଳ ସାହିତ୍ୟ ସହିତ ସମୀକ୍ଷାମୂଳକ ଓ ଗବେଷଣାଭିତ୍ତିକ ପୁସ୍ତକମାନ ସେ ପ୍ରକାଶ କରିଛନ୍ତି । 'ତରୁଣ ଶବ୍ଦକୋଷ' ଭଳି ଅଭିଧାନ ଗ୍ରନ୍ଥମନ୍ଦିର ତରଫରୁ ପ୍ରକାଶିତ ହୋଇଛି । 'ଗ୍ରନ୍ଥମନ୍ଦିର' କର୍ତ୍ତୃକ ପ୍ରକାଶିତ ପୁସ୍ତକତାଲିକା ହିଁ ତାଙ୍କ ସାଧନା, ନିଷ୍ଠା ଓ ସାଫଲ୍ୟର କାହାଣୀ କହେ । ବାଣିଜ୍ୟର ସଫଳତା ଲାଗି ସେ ଏପର୍ଯ୍ୟନ୍ତ କୌଣସି ବିକୃତରୁଚିର ପୁସ୍ତକ ପ୍ରକାଶ କରିବା କଥା ଭାବି ନାହାନ୍ତି । 'ଗ୍ରନ୍ଥମନ୍ଦିର' ଶିରୋଭୂଷଣ ଧରି ପ୍ରକାଶ ପାଇଥିବା ପୁସ୍ତକଗୁଡ଼ିକ ଏ ଯାବତ୍ ସୁରୁଚି, ବିଦ୍ୟା ଓ ଚିନ୍ତାଶୀଳତାର ପ୍ରତୀକ ହୋଇ ରହିଛନ୍ତି ।

'ଗ୍ରନ୍ଥମନ୍ଦିର'ର ଏ ପର୍ଯ୍ୟନ୍ତ ୩୩ ଖଣ୍ଡ ପୁସ୍ତକ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରି ସାରିଚି, ଯାହା ଅଭିରାମଙ୍କ ପ୍ରକାଶନର ଗୁରୁତ୍ୱ ପ୍ରମାଣ କରେ ।

ସ୍କୁଲ ଛାତ୍ର-ଛାତ୍ରୀଙ୍କ ପାଇଁ ପ୍ରକାଶିତ 'ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା' ଗ୍ରନ୍ଥମନ୍ଦିରର ଏକ ବିଶେଷ ଅବଦାନ । ଇଂରାଜୀ ଭାଷାର କ୍ଲାସିକଗୁଡ଼ିକୁ ସେ ଓଡ଼ିଆ ପିଲାଙ୍କ ପାଇଁ ପ୍ରସ୍ତୁତ କରିଛନ୍ତି ସୁପାଠ୍ୟକରି ସଂକ୍ଷେପାକାରରେ, ସ୍ୱଳ୍ପ ମୂଲ୍ୟରେ । ଦେଶବିଦେଶର ପିଲାଙ୍କ କାହାଣୀ, ଶିଶୁ ଓ କିଶୋର ସାହିତ୍ୟ, ପ୍ରୌଢ଼ଶିକ୍ଷା ଉପଯୋଗୀ ବହି, ସ୍ୱାସ୍ଥ୍ୟ ବିଷୟକ ବହି— ମାଧ୍ୟମରେ ଅଭିରାମ ଶିଶୁ, କିଶୋର, ପ୍ରୌଢ଼ ଓ ଅଳ୍ପ-ଶିକ୍ଷିତ ଜନସାଧାରଣଙ୍କ ହାତରେ ରୁଚିପୂର୍ଣ୍ଣ ସାହିତ୍ୟ ବହି ଅର୍ପଣ କରି ଏକ ଜାତୀୟ ଦାୟିତ୍ୱ ନିର୍ବାହ କରିଛନ୍ତି ।

ଓଡ଼ିଆ ସୃଜନଶୀଳ ସାହିତ୍ୟ ପ୍ରକାଶନ ସହିତ ଭାରତୀୟ ଉପନ୍ୟାସ ମାଳା ନାମରେ ଶ୍ରୀ ମହାପାତ୍ର ଗୁଡ଼ିଛନ୍ତି ଅନ୍ୟ ଭାରତୀୟ ଭାଷାରେ ପ୍ରସିଦ୍ଧି ଲାଭ କରିଥିବା, ଜ୍ଞାନପୀଠ, ସାହିତ୍ୟ ଏକାଡେମୀ ଆଦି ସଂସ୍ଥାଦ୍ୱାରା

ପୁରସ୍କୃତ ଅନେକ କାଳଜୟୀ ବହିର ଅନୁବାଦ । ଅନ୍ୟ ଭାଷାର ସାହିତ୍ୟ ସମ୍ପର୍କରେ ଏକ ସିଧାସଳଖ ଧାରଣା ସୃଷ୍ଟି କରିବାରେ ସେଗୁଡ଼ିକ ଅତ୍ୟନ୍ତ ସହାୟକ ହୋଇଛି ଓ ପାଠକଙ୍କ ଦ୍ୱାରା ବିଶେଷ ଆଦୃତ ହୋଇଛି ।

ସେଇପରି ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀମତୀ ରମାଦେବୀ, ଶ୍ରୀ ନୀଳମଣି ରାଉତରାୟ ଓ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସଦୃଶ ବିଶିଷ୍ଟ ବ୍ୟକ୍ତିମାନଙ୍କ ଆତ୍ମ-ଜୀବନୀ ପ୍ରକାଶ 'ଗ୍ରନ୍ଥମନ୍ଦିର'ର ଅନ୍ୟ ଏକ କୃତିତ୍ୱ । ପ୍ରବନ୍ଧ ଓ ରମ୍ୟରଚନା କ୍ଷେତ୍ରରେ ଶାନ୍ତନୁ ଆଚାର୍ଯ୍ୟଙ୍କ 'କରଞ୍ଜିଆ ଡାଏରି', ମନୋଜ ଦାସଙ୍କ 'କେତେ ଦିଗନ୍ତ' ଡକ୍ଟର ସଦାଶିବ ମିଶ୍ରଙ୍କ 'ଅର୍ଥ ଓ ଅର୍ଥାନ୍ତର', ଚିତ୍ତରଞ୍ଜନ ଦାସଙ୍କ 'ନଖଦର୍ପଣେନ' ସହିତ ଚନ୍ଦ୍ରଶେଖର ରଥଙ୍କ ଏକାଧିକ ଶୀର୍ଷକର ପ୍ରକାଶନ ପ୍ରୟୋଗବାଦୀ ସାହିତ୍ୟ ପ୍ରତି ଅଭିରାମଙ୍କ ସକ୍ରିୟତା ପ୍ରମାଣ କରେ ।

'ନେହେରୁ ରଚନାବଳୀ' ସହିତ ଫକୀରମୋହନଙ୍କ ଗଳ୍ପ, ଉପନ୍ୟାସ, ଓ ଜୀବନୀର ପ୍ରକାଶ ପ୍ରମାଣ କରେ ଭାରତୀୟ କ୍ଲାସିକ୍‌ଗୁଡ଼ିକ ପ୍ରତି ତାଙ୍କର ସମ୍ମାନବୋଧ ।

ତେବେ, 'ସୃଜନଶୀଳ ସାହିତ୍ୟ' ପ୍ରକାଶନ ଶ୍ରୀ ମହାପାତ୍ରଙ୍କର ପ୍ରଥମ ପସନ୍ଦ । ଗଳ୍ପ, କବିତା ଓ ଉପନ୍ୟାସ ପ୍ରକାଶନ କ୍ଷେତ୍ରରେ ସେ ସର୍ବଦା ରୁଚିପୂର୍ଣ୍ଣ ଅଥଚ ପରୀକ୍ଷାଧର୍ମୀ ସାହିତ୍ୟର ପ୍ରକାଶ କରି ଆସିଛନ୍ତି । ଓଡ଼ିଆ କବିତା ଜଗତରେ ଆଧୁନିକ କ୍ଲାସିକ୍ ରୂପେ ବିବେଚିତ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ବାଜି ରାଉତ' ପାଣ୍ଡୁଲିପି, କବିତା ୧୯୬୨ ପ୍ରକାଶ କରି ସେ ଓଡ଼ିଆ କବିତାପ୍ରେମୀଙ୍କର ମନୋହାଚକାର ସାଧନ କରିଛନ୍ତି । ଫକୀର ମୋହନଙ୍କ 'ଛ-ମାଣ ଆଠଗୁଣ୍ଠ', 'ଲଛମା' ଆଦି ସେବେକାର କ୍ଲାସିକ୍ ସହିତ ସର୍ବାଧୁନିକ ଶୈଳୀର ନବ-କ୍ଲାସିକ୍ ଯଥା ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ 'ନରକିନ୍ନର', 'ଶକୁନ୍ତଳା'; ମନୋଜ ଦାସଙ୍କ 'ଲକ୍ଷ୍ମୀର ଅଭିସାର' ଗଳ୍ପ, ପ୍ରସନ୍ନ ମିଶ୍ରଙ୍କ 'ଅସୁର' ଭଳି ଉପନ୍ୟାସ ପ୍ରକାଶ କରି ସେ ଓଡ଼ିଆ କଥା-ସାହିତ୍ୟର ଅଗ୍ରଗତିରେ ସହାୟତା କରିଛନ୍ତି ।

କିନ୍ତୁ ଗଳ୍ପ ଉପନ୍ୟାସ ପ୍ରକାଶନ କ୍ଷେତ୍ରରେ ଅଭିରାମବାବୁ ଆଗରେ ଥିଲେ ହେଁ କାବ୍ୟ-କବିତା ଓ ନାଟକ ବିଭାଗ ପ୍ରତି ଆଖିବୁଜି ଦେଇ

ନାହାନ୍ତି । ସର୍ବଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ପୁରସ୍କାରପ୍ରାପ୍ତ 'ସୂର୍ଯ୍ୟ ଓ ଅନ୍ଧକାର', କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ପାଇକ ମାଟିର ଗାଥା' ଠାରୁ ଆରମ୍ଭ କରି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ 'ଶୈଳକଳ୍ପ' ଓ ହରପ୍ରସାଦ ଦାସଙ୍କ 'ମନ୍ତ୍ରପାଠ' ପର୍ଯ୍ୟନ୍ତ ବହୁ କବିତାଗ୍ରନ୍ଥର ସେ ପ୍ରକାଶକ । ସେଇପରି ଶ୍ରୀ ଗୋପାଳ ଛୋଟରାୟଙ୍କ ବହୁ ନାଟକ ଓ ଗୀତିନାଟ୍ୟ ସମୂହ, ମନୋରଞ୍ଜନ ଦାସଙ୍କ 'ଅବବାହକାର ସ୍ୱପ୍ନ'ଠାରୁ ଆରମ୍ଭ କରି ଯଦୁନାଥ ଦାଶ ମହାପାତ୍ରଙ୍କ 'ଅଥବା ଅନ୍ଧାର' ପର୍ଯ୍ୟନ୍ତ ବହୁ ସଂଖ୍ୟକ ନାଟକର ପ୍ରକାଶ ନାଟ୍ୟ ସାହିତ୍ୟର ବିକାଶରେ ଅଭିରାମଙ୍କ ଯୋଗଦାନ ସୂଚାଏ ।

ସେଇପରି ସଚ୍ଚିଦାନନ୍ଦ ରାଉତରାୟ, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ପ୍ରମୁଖ ବହୁ ବିଶିଷ୍ଟ ଲେଖକଙ୍କ ଗ୍ରନ୍ଥାବଳୀ, ଗବେଷଣାତ୍ମକ ନିବନ୍ଧ, ଇତିହାସ ସମ୍ପର୍କିତ ପୁସ୍ତକ, ସାହିତ୍ୟର ଇତିହାସ, ସାଂସ୍କୃତିକ ଆଲୋଚନା ଗ୍ରନ୍ଥ, 'ଓଡ଼ିଶାର କିମ୍ବଦନ୍ତୀ' ଓ 'ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ' ସଦୃଶ ମୌଳିକ ଗବେଷଣା ପୁସ୍ତକ ପ୍ରକାଶନ ନିମନ୍ତେ 'ଗ୍ରନ୍ଥମନ୍ଦିର'ର ଉଦ୍ୟମ ପ୍ରଶଂସନୀୟ । 'ବୈଷ୍ଣବ ପାଣି'ଙ୍କ ଗ୍ରନ୍ଥାବଳୀ ପ୍ରକାଶକରି ସେ ଗଣକବିଙ୍କ ସାହିତ୍ୟ ପ୍ରସାରରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି ବୋଲି ସ୍ୱୀକାର କରିବାକୁ ହେବ ।

ଏସବୁ ବ୍ୟତୀତ 'ସଂସ୍କୃତ ସାହିତ୍ୟ ସମ୍ଭାର' ଗ୍ରନ୍ଥମନ୍ଦିରର ଏକ ବିଶେଷତ୍ୱ । ଓଡ଼ିଆ ଲିପିରେ ସଂସ୍କୃତ ଭାଷାର ଲୋକ-ପ୍ରିୟ ତଥା ଗୁରୁତ୍ୱ-ପୂର୍ଣ୍ଣ ପୁସ୍ତକଗୁଡ଼ିକର ସୁଲଭ ସଂସ୍କରଣ ପ୍ରକାଶ କରି ଶ୍ରୀ ଅଭିରାମ ମହାପାତ୍ର ସଂସ୍କୃତାନୁରାଗୀଙ୍କ ପ୍ରିୟଭାଜନ ହୋଇପାରିଛନ୍ତି ।

ପୁସ୍ତକ ବିକ୍ରେତା ଭାବେ 'ଗ୍ରନ୍ଥମନ୍ଦିର'ର ଭୂମିକା ପ୍ରଶଂସନୀୟ । ଏକଦା 'ନ୍ୟାସନାଲ ବୁକ୍‌ଟ୍ରଷ୍ଟ ଅଫ୍ ଇଣ୍ଡିଆ' କର୍ତ୍ତୃକ ପ୍ରକାଶିତ ପୁସ୍ତକ ସମୂହର ଓଡ଼ିଶା ଅଞ୍ଚଳ ପାଇଁ ଗ୍ରନ୍ଥ ମନ୍ଦିର ଥିଲା ମୁଖ୍ୟ ବିତରକ । ଏତଦ୍‌ବ୍ୟତୀତ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ପୁସ୍ତକ ଏବଂ ବହୁ ଭିନ୍ନ ସଂସ୍ଥା ଦ୍ୱାରା ପ୍ରକାଶିତ ଉପାଦେୟ ପୁସ୍ତକ 'ଗ୍ରନ୍ଥମନ୍ଦିର'ରେ ବିକ୍ରୟ ପାଇଁ ରକ୍ଷିତ ଥାଏ । ଏହି ବ୍ୟାବସାୟିକ ସଦ୍‌ଭାବ ଓ ସହଯୋଗ ଅବଶ୍ୟ ପ୍ରଶଂସନୀୟ ।

ଶ୍ରୀ ଅଭିରାମ ମହାପାତ୍ରଙ୍କର ସୃଜନଶୀଳ ଲେଖକଙ୍କ ସହିତ ଉତ୍ତମ ବୁଝାମଣା ଓ ସୁସମ୍ପର୍କ ସବୁବେଳେ ଥିଲା ଓ ବର୍ତ୍ତମାନ ଅଛି । ତ୍ରୁଟିହୀନ ପୁସ୍ତକ ପ୍ରକାଶନ ଯୋଗୁ ସେ ଲେଖକଙ୍କ ଆସ୍ଥାଭାଜନ ହୋଇପାରିଛନ୍ତି । ସେ ନିଜେ ପାଣ୍ଡୁଲିପି ପାଠକରି ପାଣ୍ଡୁଲିପିରେ କିଛି ଭୁଲ ଥିଲେ ଲେଖକଙ୍କ ସହିତ ଆଲୋଚନା କରି ସଂଶୋଧନ କରାଇ ନିଅନ୍ତି ଓ ତାପରେ ପ୍ରକାଶନ ପାଇଁ ଦିଅନ୍ତି । ଯଶୋବନ୍ତ ସ୍ରଷ୍ଟାମାନେ ଏଥିରେ ପ୍ରୀତ ହେବା ଲକ୍ଷ୍ୟ କରାଯାଇଛି । ଏହା ପଛରେ ଅଛି ପ୍ରକାଶନ କ୍ଷେତ୍ରରେ ତାଙ୍କର ସଦିଚ୍ଛା ଓ ନିଷ୍ଠା ।

ଏହି ନିଷ୍ଠା ଓ ସାଧନା ଧନକ ପାଇଁ କି ଗନ୍ଥକ ପାଇଁ ସେ ପ୍ରଦର୍ଶନ କରିନାହାନ୍ତି । ଖଣ୍ଡିଏ ବା ଦୁଇଖଣ୍ଡି ବହିରେ ସୀମାବଦ୍ଧ ନ ହୋଇ ତାହା ଅଭିରାମଙ୍କ ସମଗ୍ର ଜୀବନରେ ପରିବ୍ୟାପ୍ତ ହୋଇଛି ଓ ବର୍ତ୍ତମାନ ସୁଦ୍ଧା ୧୫୦୦ରୁ ଅଧିକ ବହି ପ୍ରକାଶ କରିସାରିଛନ୍ତି । ଐକାନ୍ତିକ ସାଧନା ଉପରେ ଗୁରୁତ୍ୱ ଦେଇ ଏକଦା ଗୋପବନ୍ଧୁ ଦାସ କହିଥିଲେ—'ସମଗ୍ର ଜୀବନ ହେଉ ଏକ ଶିବରାତ୍ରୀ' । ଯଥାର୍ଥରେ ଅଭିରାମଙ୍କ ଜୀବନ ହୋଇଛି ଶିବରାତ୍ରୀ ପରି ଏକନିଷ୍ଠ ସାଧନାରେ ଉଜ୍ଜ୍ୱଳ । ପିତାଙ୍କ ଜୀବନାଦର୍ଶରେ ଦୀକ୍ଷିତ, ଉଚ୍ଚାଦେଶ୍ୟ ପୁସ୍ତକ ପ୍ରତି ମମତାବୋଧରେ ଉଦ୍ଭାସିତ, ପ୍ରକାଶନର ଉନ୍ନତ ବିଧାନରେ ନିରନ୍ତର ସାଧନାରତ ଓ ବିଷୟ-ବିତରଣରେ ସଦାସର୍ବଦା ମନୋଯୋଗୀ ଶ୍ରୀ ମହାପାତ୍ରଙ୍କ କର୍ମମୟ ଜୀବନ ବାସ୍ତବିକ ଅଭିନନ୍ଦନୀୟ ।

'ଗ୍ରନ୍ଥମନ୍ଦିର'ର ପ୍ରତିଷ୍ଠାତା, ଅଭିରାମଙ୍କ ପିତା ଶ୍ରୀଧର ମହାପାତ୍ରଙ୍କ ଏକାନ୍ତ ନିଷ୍ଠା ଓ ସାଧନାର ବିଚାର କରି ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୨ ରେ, ସାରଳା ପୁରସ୍କାର ପ୍ରଦାନ ସଂସ୍ଥା ୧୯୮୮ ରେ (ମରଣୋତ୍ତର) ଶ୍ରୀଧର ମହାପାତ୍ରଙ୍କୁ ସମ୍ମାନ ଓ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ତାପରେ ୧୯୯୨ ରେ 'ବର୍ଣ୍ଣମାଳା' ତରଫରୁ 'ପ୍ରକାଶକରତ୍ନ ସମ୍ମାନ' ଓ ଚଳିତବର୍ଷ ଭୁବନେଶ୍ୱରର ପୁସ୍ତକମେଳା ତରଫରୁ 'ସାରସ୍ୱତ ସାହିତ୍ୟ ସମ୍ମାନ' ଅଭିରାମଙ୍କ ମାଧ୍ୟମରେ ଗ୍ରନ୍ଥମନ୍ଦିରକୁ ପ୍ରଦାନ କରାଯାଇଛି । ଏଇମାତ୍ର ଗତବର୍ଷ (୧୯୯୩) ଫେଡେରେସନ ଅଫ ଇଣ୍ଡିଆନ ପବ୍ଲିସର୍ସ (ନୂଆଦିଲ୍ଲୀ) ତରଫରୁ ଓଡ଼ିଆ ପୁସ୍ତକ ପ୍ରକାଶନରେ ଗ୍ରନ୍ଥମନ୍ଦିରର କୃତିତ୍ୱ

ପାଇଁ ଶ୍ରୀ ମହାପାତ୍ରଙ୍କୁ 'Distinguished Publishers Award' ପ୍ରଦାନ କରିଛନ୍ତି । ତା'ଦ୍ୱାରା କେବଳ ଶ୍ରୀ ମହାପାତ୍ରଙ୍କର ନୁହେଁ ଓଡ଼ିଆ ପ୍ରକାଶନକୁ ଭାରତୀୟ ସମ୍ମାନ ଓ ସ୍ୱୀକୃତି ମିଳିପାରିଛି ବୋଲି କହିବାକୁ ହେବ ।

ସମ୍ପ୍ରତି ଓଡ଼ିଆ ପୁସ୍ତକ ପ୍ରକାଶନ କ୍ଷେତ୍ର ନୈରାଶ୍ୟ ଓ ଅବକ୍ଷୟର କଳାଗ୍ଲଇର ସଙ୍କେତରେ ଆତଙ୍କିତ ହେଲେ ହେଁ ଅଭିରାମ ମହାପାତ୍ର ତାଙ୍କ ଆଦର୍ଶରୁ ଓହରିଯିବା କଥା ଭାବି ନାହାନ୍ତି ବରଂ ସମସ୍ତ ପ୍ରକାର ପ୍ରତିକୂଳତା ଓ ବିପଦ ଆପଦ ପାଇଁ ଅଣ୍ଟା ଭିଡ଼ିଛନ୍ତି । ନିଜେ ଯେପରି ପିତାଙ୍କ ପ୍ରେରଣାରେ ଗ୍ରନ୍ଥମନ୍ଦିର ସମ୍ଭାଳିଥିଲେ ସେ ସେପରି ନିଜର ଉଚ୍ଚ ଡିଗ୍ରୀଧାରୀ ତିନି ପୁଅଙ୍କୁ ପ୍ରକାଶନ ଜଗତରେ ପ୍ରବେଶ କରାଇଛନ୍ତି । ତେଣୁ ଅଭିରାମ ଆଗାମୀ କାଳକୁ ମଧ୍ୟ ଓଡ଼ିଆ ପ୍ରକାଶନର ଉନ୍ନତି ସମୃଦ୍ଧି ପାଇଁ ଶପଥପାଠ କରାଇ ନେଇଥିବା ମନେହୁଏ । ଯେଉଁଥି ପାଇଁ ସେ ସ୍ମରଣୀୟ ହୋଇ ରହିବେ ।

